# ପୃଥିବୀର ଲୋକକଥା

( ହିମାଚଳ ପ୍ରଦେଶ ଲୋକକଥା )

[ ୧ମ ଭାଗ ]

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି. ଏସ୍. ସି., ଏଲ୍.ଏଲ୍. ବି.
ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍. ଏ., ବି. ଇଡ୍

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

PRUTHIBIR LOKA KATHA

( Himachal Pradesh Lokakatha )

Pratham Bhaga

# ପୃଥିବୀର ଲୋକକଥା

( ହିମାଚଳ ପ୍ରଦେଶ ଲୋକକଥା )

ପ୍ରଥମ ଭାଗ



ପ୍ରକାଶକ :

**ନୀଳକଣ୍ଠେଶ୍ଵର ଶିକ୍ଷା ପ୍ରକଳ୍ପ**

ବକ୍ସିବଜାର ରୋଡ଼, କଟକ-୭୫୩୦୦୧

ପ୍ରଥମ ସଂସ୍କରଣ : ୧୯୯୧, ବୁଦ୍ଧ ପୂର୍ଣ୍ଣିମା

ଦ୍ଵିତୀୟ ସଂସ୍କରଣ : ୨୦୦୩, ମହା ଶିବରାତ୍ରି

ପ୍ରଚ୍ଛଦପଟ — **ଶ୍ରୀ ଭବନାରାୟଣ ନାୟକ**

ମୁଦ୍ରଣ : **କେ. ବି. ଏସ୍. ପ୍ରିଣ୍ଟର୍ସ**

ତେଲେଙ୍ଗାପେଣ୍ଠ, କଟକ-୨

**ମୂଲ୍ୟ — ୧୦ ଟଙ୍କା**

# ନିବେଦନ

ହିମାଚଳ ପ୍ରଦେଶ । ଶୀତ ଋତୁରେ ଏଠାରେ ବରଫ ବୃଷ୍ଟି ହୁଏ । ସମସ୍ତ କୃଷିକାର୍ଯ୍ୟ ବନ୍ଦ ହୋଇଯାଏ । ଲୋକମାନେ ଘଣ୍ଟା ଘଣ୍ଟା ଧରି ଏକାଠି ବସିରହନ୍ତି । ଏତିକି ବେଳେ ଆରମ୍ଭ ହୁଏ ଗଳ୍ପ । ଏହି ଗଳ୍ପର ବହୁ ପୁନରାବୃତ୍ତି ହୁଏ । ଏହାର ଉପାଦେୟତା ଖୁବ୍ ଅଧିକ । ଏହା ସେମାନଙ୍କର ଜୀବନକୁ ପ୍ରଭାବିତ କରେ । ଫଳରେ ସେଠାକାର ଲୋକେ ସରଳ ଓ ବନ୍ଧୁବତ୍ସଳ । ଆତିଥେୟତାରେ ଅନନ୍ୟ । ବିରଳ ।

ପ୍ରସିଦ୍ଧ ସିମଲା ଗ୍ରାମୀଣ ଗଳ୍ପ ଆମେ ପରବର୍ତ୍ତୀ ସଂଖ୍ୟାରୁ ଆରମ୍ଭ କରିବୁ । ଏହା ତିନ ଖଣ୍ଡରେ ଶେଷ ହେବ ।

ଆମ ଚରିତ୍ର ନିମ୍ନଗାମୀ ହୋଇ ଆସୁଛି । ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ସେଥିପାଇଁ ଲୋକକଥାର ପ୍ରକାଶ । ଏଥିପାଇଁ ଜନ ସହଯୋଗ ଲୋଡ଼ା । ଏହାହିଁ ଆମର ନିବେଦନ ।

ଲକ୍ଷ୍ମୀଧର ମହାନ୍ତି

# ସୂଚୀପତ୍ର

# ରାଜକୁମାରୀ ଓ ଶୁଆ

ଏକଦା ଗୋଟିଏ ଗୃଷୀ ଥିଲା । ତା'ର ଦୁଇଟି ସ୍ତ୍ରୀ । ସେମାନେ ଏକାଠି ରହୁଥିଲେ ।

ଦିନେ ବଡ଼ ପାଣି ପାଇଁ ଓ ସାନ ଗୋରୁ ମୋହିଁବାକୁ ଯାଇଥିଲେ । ଫେରିଲେ ଏକାବେଳେ । ବଡ଼ ମୁଣ୍ଡରେ ପାଣି ମାଠିଆ । ସାନ ମୁଣ୍ଡରେ ଚୁନ୍ନ ଗେଣ୍ଡକଡ଼ ଅଖା । ଅଗଣାରେ ଉଭୟେ ଠିଆ ହେଲେ । କେହି କାହା ମୁଣ୍ଡରୁ ବୋଝ ଓହ୍ଲାଇଲେ ନାହିଁ । ଉଭୟେ ସ୍ୱାମୀକୁ ଡାକଲେ ।

ଡାକ ଶୁଣି ଗୃଷୀଟି ଆସିଲା । ସେ ଦେଖିଲା—ଦୁଇ ସ୍ତ୍ରୀ ତା'ର ଅଗଣାରେ ଠିଆ ହୋଇଛନ୍ତି । ସେମାନଙ୍କ ମୁଣ୍ଡରେ ବୋଝ । ଅତି ଆଶ୍ଚର୍ଯ୍ୟର କଥା ଯେ କେହି ବୋଝ ଓହ୍ଲାଉ ନାହାନ୍ତି । ତାକୁ ପୁଣି ଡାକବା ପଡୁଛି ଯେ ବୋଝ ଓହ୍ଲାଇ ଦିଅ । ସ୍ତ୍ରୀ-ମାନଙ୍କର ଢଙ୍ଗ ଦେଖି ସେ ତାଜୁବ । ସେମାନଙ୍କ ଉଦ୍ଦେଶ୍ୟ କ'ଣ ସେ ଠଉରାଇ ପାରିଲା ନାହିଁ । ସେ ଭାବିଲା—ସେମାନେ ଜାଣନ୍ତି ଯେ ସେ ଜଣେ ଲୋକ । ଚରିହୋଇ ପାରିବ ନାହିଁ । ଏକାବେଳକେ ଦୁଇଜଣଙ୍କର ମୁଣ୍ଡରୁ ବୋଝ ଓହ୍ଲାଇବା ଅସମ୍ଭବ । ଏ କଥା ଜାଣି-ଶୁଣି ତାକୁ ପରୀକ୍ଷା କରୁଛନ୍ତି । ସେ ମନେ ମନେ କ୍ଷୁବ୍ଧ ହେଲା । କିନ୍ତୁ ସେ ଟିକିଏ ଚିନ୍ତାକରି ଦେଖିଲା—ଘର ପାଖରୁ ନଈଟା ବେଶ୍ ଦୂର । ସେଠୁ ପାଣି ମାଠିଆଟି ମୁଣ୍ଡରେ ବଡ ବୋହି ଆଣିଛି । ବାଧା ତାକୁ ବହୁତ ହୋଇଥିବ । ସାହାଯ୍ୟ ତା'ର ଦରକାର । କିନ୍ତୁ ସାନ ତ ବାଡରୁ ଆସିଛି । ଯେଉଁ ଚୁନ୍ନ ଗେଣ୍ଡକଡ଼ ନେଇଥିଲା, ସେଥିରୁ ଗୋରୁଙ୍କୁ ଖୁଆଇଛି । ଅବଶିଷ୍ଟ ଯାହା ଅଛି, ତାକୁ ସେ ଆଣିଛି । ତାକୁ ବାଧା ହେବାର ପ୍ରଶ୍ନ ନାହିଁ । ସେ କେବଳ ବାଦକୁ

ପୁଅ ଜନ୍ମ କରୁଛୁ । ଏପରି ସ୍ଥଳେ ବଡ଼କୁ ସାହାଯ୍ୟ କରିବାଟା ତା'ର କର୍ତ୍ତବ୍ୟ । ସେ ଗଲା । ବଡ଼ ମୁଣ୍ଡରୁ ପାଣି ମାଠିଆ ଓହ୍ଲାଇ ଦେଲା ।

ଏକଥା ସାନ ଦେହରେ ଗଲା ନାହିଁ । ପିତା ତା'ର ତାକୁ ଚଢ଼ିଗଲା । ଦଉଡ଼ିଟିଏ ତା' ହାତରେ ଥିଲା । ରାଗରେ ସେ ତାକୁ ସ୍ୱାମୀ ଉପରକୁ ଫିଙ୍ଗିଦେଲା । ସ୍ୱାମୀ ଦେହରେ ତା' ବାଜିଲା ନାହିଁ । ପାଖରେ ତା'ର ପଡ଼ିଲା । କିନ୍ତୁ ଆଶ୍ଚର୍ଯ୍ୟ । ତଳେ ପଡ଼ୁ ପଡ଼ୁ ଦଉଡ଼ିଟି ଗୋଟିଏ ବିଷଧର ସାପ ପାଲଟିଗଲା । ତାକୁ ଦେଖି ଋଷୀଟି ସ୍ତମ୍ଭନ । ଦେହରୁ ତା'ର ରକ୍ତ ଶୁଖିଗଲା । ଏତିକିବେଳେ ବଡ଼ ତା' ମୁଣ୍ଡରୁ ମୁଚୁଳାଟି ବାହାର କଲା । ସେଇଟିକୁ ସାପ ଉପରକୁ ଫିଙ୍ଗିଦେଲା । ମୁଚୁଳାଟି ତଳେ ପଡ଼ିବା ମାତ୍ରେ ନେଉଳ ରୂପ ନେଇଗଲା । ନେଉଳ କି ସାପକୁ ଛାଡ଼େ ? ସେ ଆକ୍ରମଣ କଲା । କଥାରେ ଅଛି ଅହି ନକୁଳ ଯୁଦ୍ଧ । ସବୁବେଳେ ଭୟଙ୍କର । ଫଳ ଯାହା ହେବାର କଥା, ସେଇଆ ହିଁ ହେଲା । ସାପଟି ମଲା ।

ସେଇଦିନୁ ଋଷୀଟି ମନରେ ଅଶାନ୍ତ । ବହୁ ଦ୍ୱନ୍ଦର ସେ ଶିକାର । ମନ ତା'ର ଛଟପଟ ହୁଏ । ଯେତେ ଚେଷ୍ଟାକଲେ ବି ମନକୁ ସେ ବୁଝାଇପାରେ ନାହିଁ । ତା'ର ସ୍ତ୍ରୀ ଦୁଇଜଣ ଯେ ତନ୍ତ୍ର ବିଶାରଦ ସେଥିରେ ତା'ର ସନ୍ଦେହ ନଥିଲା । ତନ୍ତ୍ର ବଳରେ ମଣିଷ ଅସାଧ୍ୟ ସାଧନ କରିପାରେ । କେଉଁବେଳେ କ'ଣ ତାକୁ କରି-ଦେବେ, ସେଇଟା ତାଙ୍କ ହାତରେ । ସ୍ୱାମୀ ହିସାବରେ ତାଙ୍କୁ ଜବତ କରି ରଖିବା ତା' ପକ୍ଷରେ ଆଉ ସମ୍ଭବ ନୁହେଁ । ତେଣୁ ସେମାନଙ୍କ ପାଖରେ ରହିବାଟା ସାପ ମେଣ୍ଟରେ ରହିବା ସଙ୍ଗେ ସମାନ । ବୁଦ୍ଧିମାନ ଲୋକ ଏ ଅବସ୍ଥାରୁ ଦୂରରେ ରହିବା ଉଚିତ । ସବୁଆଡ଼ୁ ସେ ଗମ୍ଭୀର ଭାବରେ ବିଚାର କଲା । ଶେଷକୁ ସେ ସ୍ଥିର

କଲା—ଘର ଗ୍ରୁଡ଼ ଗୁଳିଯିବ ।

ଯାହା ଭାବିଲ, ସେଇଆ କଲା । ଦିନେ ଲୁଚି କରି ଘରୁ ପଳାଇଲା । କୁଆଡ଼େ ଯିବ, ସେ ତ ଜାଣି ନଥିଲା । ତେଣୁ ମନ ତା'ର ଯୁଆଡ଼େ ହେଲ, ସେଇଆଡ଼େ ଗୁଲଲା । ଶେଷକୁ ସେ ରାଜାଙ୍କ ଉଆସ ପାଖରେ ପହଞ୍ଚିଗଲା । ସେଠି ତା'ର ଆଉ ଜଣେ ଗୃଷୀ ସହିତ ଭେଟ ହେଲା । ଦୁଇଜଣଯାକ ସରଳ ଓ ସାଧାରଣ ଲୋକ । ବାଦ ଛେଦର ବହୁତ ଦୂରରେ । ଆଲୋଚନା ଓ ଆଳାପ ହେବାରୁ ଦୁଇଜଣଯାକ ଘନିଷ୍ଠ ହୋଇଗଲେ । ପ୍ରଥମ ଗୃଷୀଟି ତା ସ୍ତ୍ରୀମାନଙ୍କ ବିଷୟରେ ସବୁକଥା ଗପିଲା । ଏକଥା ଶୁଣି ଦ୍ୱିତୀୟ ଗୃଷୀଟି କହିଲା—"ଭାଇ ମୋ ଭାଗ୍ୟ ବି ଭାରି ଖରାପ । ଏମିତି କ ତମଠାରୁ ବଳକର । ମୋ ସ୍ତ୍ରୀ ଦିନରେ ମୋତେ ବଳଦ କରିଦିଏ । ଖୁବ୍ ଖଟାଏ । ମୁଁ ଅତିଷ୍ଠ ହୋଇ ପଳାଇ ଆସିଛି ।"

ଏତିକିବେଳେ ସେ ଦେଶର ରାଜା ଛଦ୍ମବେଶରେ ସେଇବାଟେ ଯାଉଥିଲେ । ଗୃଷୀ ଦୁହିଁଙ୍କର କଥା ତାଙ୍କ କାନରେ ପଡ଼ିଲା । ସେ ସେମାନଙ୍କ ପାଖକୁ ଆସିଲେ । ସେମାନଙ୍କୁ କହିଲେ—"ତୁମ-ମାନଙ୍କର ଦୁଃଖ ଶୁଣିଲି । ଅନେକ ସ୍ୱାମୀ ସ୍ତ୍ରୀ ହାତରେ ଲାଞ୍ଛିତ ଓ ଅପମାନିତ ହୁଅନ୍ତି । ବହୁତ କଷ୍ଟ ବି ପାଆନ୍ତି । ସେମାନଙ୍କ ଯନ୍ତ୍ରଣା ତୁଳନାରେ ତମ କଷ୍ଟ କିଛି ନୁହେଁ । ସେଇ ନର୍ଯ୍ୟାତିତ ସ୍ୱାମୀମାନଙ୍କ ମଧ୍ୟରୁ ମୁଁ ଜଣେ । ତୁମେ ମୋର ଦୁଃଖର କାହାଣୀ ଶୁଣିବ ?"

ଗୃଷୀ ଦୁଇଟି ରାଜାଙ୍କ କଥା ଶୁଣି ଅବାକ୍ । ରାଜାଙ୍କୁ ସେମାନେ ଅବିଶ୍ୱାସ କରି ପାରିଲେ ନାହିଁ । ତାଙ୍କ କଥା ଶୁଣିବାକୁ ଆଗ୍ରହ ପ୍ରକାଶ କଲେ । ଏହା ଦେଖି ରାଜା କହିଲେ—"ଆଗେ ମୁଁ ମୋ ସ୍ତ୍ରୀ ପାଖରେ ରହୁଥିଲି । ଶାଶୁ ଆମ ସାଥିରେ ଥିଲେ ।

ଦିନେ ସେମାନଙ୍କ କଥାବାର୍ତ୍ତାରୁ ଜାଣିଲି ଯେ ସମୁଦ୍ର ଆର

ପାଖରେ ଦେଶଟିଏ ଅଛି । ସେଠାକାର ରାଜା ସହିତ ଏମାନଙ୍କର ଘନିଷ୍ଠ ସମ୍ପର୍କ । ତାଙ୍କର ଝିଅ ବାହା ହେଉଛି । ରାଜାଙ୍କ ଦ୍ୱାରା ଏମାନେ ନିମନ୍ତ୍ରିତ । ସେଇ ରାତିରେ ଏମାନେ ଯାଇ ବାହାଘରରେ ଯୋଗ ଦେବେ । ମୋତେ ସେମାନେ ସେ କଥା ଜାଣିବାକୁ ଦେବେ ନାହିଁ ।

ସେମାନଙ୍କ କଥା ମୋତେ ଗପଭଳି ଲାଗିଲା । କିନ୍ତୁ କଥାଟାର ସତ୍ୟତା ଜାଣିବାକୁ ମୁଁ ଇଚ୍ଛୁକ ହେଲି । ସେଥିପାଇଁ ସେ ରାତିଟା ଯାକ ତାଙ୍କୁ ଜଗିବି ବୋଲି ମନସ୍ଥ କଲି ।

ସନ୍ଧ୍ୟା ପରେ ପରେ ମୋତେ ନିଦ ଲାଗୁଛି ବୋଲି ବାହାନା କଲି । ସିଧା ଯାଇ ବିଛଣାରେ ଶୋଇପଡ଼ିଲି । କିନ୍ତୁ ସେତେବେଳକୁ ଉତ୍କଣ୍ଠା ମୋର ବଢ଼ୁଥିଲା । ନିଦ ଆସିବ କେଉଁଠୁ ? ଏପଟ ସେପଟ ହେଲେ ସେମାନେ ମୋତେ ସନ୍ଦେହ କରିବେ । ତେଣୁ ନିଶ୍ଚଳ ଭାବରେ ବିଛଣାରେ ପଡ଼ିରହିଲି । କିନ୍ତୁ ଆଖି ମୋର ସେମାନଙ୍କ ଗତିବିଧି ଉପରେ ଥାଏ ।

ମୁଁ ନିଦରେ ଶୋଇଗଲିଣି ବୋଲି ମୋ ସ୍ତ୍ରୀ ଓ ଶାଶୁର ବିଶ୍ୱାସ ହେଲା । ସେମାନେ ଯାଇ ସଜବାଜ ହେଲେ । ଧୀରେଧୀରେ ଘରୁ ପଦାକୁ ବାହାରିଲେ । ମୁଁ ଉଠିଲି । ଛପି ଛପି ତାଙ୍କ ପିଛା ଧରିଲି । ଘର ପାଖରେ ଆମର ଗୋଟିଏ ଝୁଙ୍କାଳିଆ ଗଛ ଥିଲା । ସେମାନେ ସେଇ ଗଛ ପାଖକୁ ଆସିଲେ । ମା' ଝିଅ ଜଣକ ପରେ ଜଣେ ଗଛରେ ଚଢ଼ିଲେ ।

ଘୋରଅନ୍ଧାର ଅନ୍ଧାର । ମୁହଁକୁ ମୁହଁ ଦେଖାଯାଉ ନ ଥାଏ । ସେମାନେ ସେତେବେଳେ ଗଛଚଢ଼ାରେ ବ୍ୟସ୍ତ ଥିଲେ । ମୁଁ ଗଛ ପାଖକୁ ଆସିଲି । ଗଛର ମୂଳ ଡାଳରେ ବସିଲି । ମୁଁ ସେ ସେମାନଙ୍କ ସାଥିରେ ଅଛି, ସେମାନେ ଜାଣିପାରିଲେ ନାହିଁ । ମା'

ଝିଅ ଭଲଭାବରେ ବସି ସାରିବା ପରେ ଝିଅ କହିଲା—"ଉଡ଼ିଯା ସମ୍ବଲ, ଦରିଆ ଆରପାରିରେ ରାଜ ଉଆସ । ସେଠାରେ ଆମକୁ ପହଞ୍ଚାଇ ଦେ ।"

ଆଦେଶ ପାଇ ଗଛଟି ମାଟି ଗ୍ରାଡ଼ିଲା । ଆକାଶରେ ଉଡ଼ି ଉଡ଼ି ଗଲା । ସମୁଦ୍ର ପାର ହୋଇ ଗୋଟିଏ ରାଜ ଉଆସ ପାଖରେ ପହଞ୍ଚିଗଲା । ଗଛଟି ସେଠି ତଳକୁ ଓହ୍ଲାଇଲା । ତଳେ ଯେମିତି ସ୍ଥିର ହୋଇ ରହିଛି ମୁଁ ତରତର ହୋଇ ଓହ୍ଲାଇ ପଡ଼ିଲି । ପାଖରେ ଗୋଟିଏ ବୁଦା ଥିଲା । ସେଇଠି ଲୁଚିଗଲି । ମା' ଝିଅ ଦୁହେଁ ଗଛରୁ ଓହ୍ଲାଇ ସିଧା ଉଆସକୁ ଗଲେ । ମୁଁ ଯେ ତାଙ୍କ ସାଥିରେ ଯେ ଆସିଛି ସେମାନେ ଜାଣିପାରିଲେ ନାହିଁ । ମୁଁ ତାଙ୍କ ପଛେ ପଛେ ଗଲି । ସେମାନେ ନଅରରେ ପଶିଲେ । ମୁଁ ବାହାରେ ରହି ବାହାଘରର ଆୟୋଜନ ଦେଖିଲି ।

ଗୋଟିଏ ଜାଗାରେ ବରଯାତ୍ରୀମାନେ ଅପେକ୍ଷା କରିଥିଲେ । ଭୋଜିଭାତ ପାଇଁ ଆୟୋଜନ ଚାଲିଥାଏ । କିନ୍ତୁ ମୁଁ ଅନୁଭବ କଲି—ବରଯାତ୍ରୀମାନଙ୍କ ମଧ୍ୟରୁ କାହା ମନରେ ସରାଗ ଆଉ ଉନ୍ମାଦନା ନାହିଁ । ମୋତେ ଦେଖି ତାଙ୍କ ଭିତରୁ କେତେକ ମୋ ପାଖକୁ ଧାଇଁ ଆସିଲେ । ମୋତେ ଖୁବ୍ ଆଦର କଲେ । ଗୋଟିଏ ଜାଗାରେ ବସାଇଲେ । ଏପରି ଆଦର ଯେ କାହିଁକି, ମୁଁ ତା' ଅର୍ଥ ବୁଝିପାରିଲି ନାହିଁ ।

ଜଣେ ବୃଦ୍ଧ ମୋ ପାଖକୁ ଆସିଲେ । ସେ ମୋତେ କହିଲେ —"ବାପରେ ! ଆମେ ବଡ଼ ବିପଦରେ ପଡ଼ିଯାଇଛୁ । ତୁ ଆମକୁ ଉଦ୍ଧାର ନ କଲେ ଆମେ ଭାସିଯିବୁ ।" କଣ୍ଠରେ ତାଙ୍କର ନମ୍ରତା ଓ କାତରତା ପୂରି ରହିଥିଲା ।

ଘଟଣାଟି କ'ଣ, ମୁଁ ଜାଣିବାକୁ ଚାହିଁଲି । ତେଣୁ ସେ

ବଖ୍ୟାନ କଲେ—"ଏଠାକାର ରାଜକେମା ଖୁବ୍ ସୁନ୍ଦରୀ । ଜିଦ୍-ଖୋର ବି । ତାଙ୍କୁ ବାହା ହେବାକୁ ଯେଉଁ ରାଜପୁତ୍ର ଆସିଛନ୍ତି, ସେ ଅସୁନ୍ଦର । କଦାକାର । ରାଜକେମା ପାଇଁ ସେ ଅନୁପଯୁକ୍ତ । ଅଯୋଗ୍ୟ । ରାଜକେମା ତାଙ୍କୁ ଦେଖିଲେ, ବାହା ତ ହେବେ ନାହିଁ କ'ଣ ବୋଲି କ'ଣ କରି ବସିବେ । ଆମକୁ ବର ଫେରାଇ ନେବାକୁ ହେବ । ଏହା ଏକ ଲୋକହସା କଥା । ତୁ ଯଦି ରାଜି ହୁଅନ୍ତୁ, ଆମେ ତୋତେ ବରବେଶ କରି ନେବୁ । ବାହାଘର ସରିଗଲେ, ତୁ ଚାଲିଯିବୁ । ରାଜକେମା ଆମ ଦେଶକୁ ଗଲେ, ସେ ତ ଆମ ଅକ୍ତିଆରରେ ରହିବେ । ତେଣିକି ଆମର ଅସୁବିଧା ହେବ ନାହିଁ । ତୁ ଆମର ଏଇ ଅନୁରୋଧ ରଖିଲେ, ଆମେ ବି ତୋତେ ସନ୍ତୁଷ୍ଟ କରିଦେବୁ ।"

ପ୍ରଥମେ ପ୍ରଥମେ ମୁଁ ଏ ପ୍ରସ୍ତାବରେ ରାଜି ହେଉ ନଥିଲି । ସମସ୍ତେ ମିଶି ମୋତେ ଖୁବ୍ ବାଧ୍ୟ କଲେ । ଶେଷକୁ ମୁଁ ରାଜି ହେଲି । କିନ୍ତୁ ଗୋଟିଏ ସର୍ତ୍ତରେ । ବାହାଘର ସରୁ ବା ନ ସରୁ, ଭୋର ହେବା ପୂର୍ବରୁ ମୁଁ ପଳାଇବି ।

ମୋର ସମ୍ମତି ଅଛି, ଏକଥା ଶୁଣି ସମସ୍ତେ ଖୁସି । ମୋର ସର୍ତ୍ତ ଉପରେ କେହି ଗୁରୁତ୍ୱ ଦେଲେ ନାହିଁ । ସେମାନେ ଏତେ ଆନନ୍ଦିତ ହୋଇଗଲେ ଯେ ସମସ୍ତେ ଆସି ମୋ' ଉପରେ ଅତର ଢାଳିଲେ । ଅତରରେ ମୁଁ ଗାଧୋଇ ପଡ଼ିଲି । ମୋତେ ବରବେଶ କରାଗଲା । ବଢ଼ିଆ ପୋଷାକ କରି ମୋତେ ଉଆସକୁ ନେଇ ଗଲେ ।

ଯେ ମୋତେ ଦେଖିଲା, ସେ ମୋ' ରୂପର ପ୍ରଶଂସା କଲା । ଦଳ ଦଳ ହୋଇ ଲୋକେ ବର ଦେଖିବାକୁ ଆସିଲେ । କଥାଟା ବିଜୁଳି ବେଗରେ ଚାରିଆଡ଼େ ଖେଳିଗଲା । ରାଜକେମା ଓଲଟା

କଥା ଶୁଣିଥିଲେ । ତେଣୁ ସେ ନିଜ ସ୍ୱ-ଚକ୍ଷୁରେ ବରକୁ ଦେଖିବାକୁ ଚାହିଁଲେ । ମୋ' ରୂପରେ ସେ ମୁଗ୍ଧ । ମୁହଁରେ ତାଙ୍କର ହସ । ରାଜା ଏକଥା ଶୁଣି ଆତ୍ମସନ୍ତୋଷ ଅନୁଭବ କଲେ ।

ବାହାଘର ଆରମ୍ଭ ହୋଇଗଲା । ମୁଁ ବେଦୀରେ ବସିଥାଏ । ଏତିକିବେଳେ ମୋ' ସ୍ତ୍ରୀ ବର ଦେଖିବାକୁ ଆସିଲା । ମୋତେ ଦେଖି ସେ ଆଶ୍ଚର୍ଯ୍ୟ । ତା' ନିଜ ଆଖିକୁ ସେ ବିଶ୍ୱାସ କରିପାରୁ ନଥିଲା । ସେଥିପାଇଁ ସେ ମୋ' ପାଖକୁ ଲାଗି ଆସିଲା । ମୋତେ ନିରେଖି ନାରେଖି କରି ଦେଖିଲା । ମୁଁ ସବୁ ଦେଖୁଥାଏ । କିନ୍ତୁ ନ ଜାଣିଲା ପରି ସ୍ଥିର ଅବିଚଳିତ ଭାବରେ ବସିଥାଏ । କିନ୍ତୁ ମନ ମୋ'ର ପ୍ରକୃତରେ ବିଚଳିତ ହେଲା । ମୁଁ ପ୍ରମାଦ ଗଣିଲି ।

ରାତି ପାହିବା ପୂର୍ବରୁ ବାହାଘର କାମସରି ସରିବ, ସେଥିପାଇଁ ବରପକ୍ଷ ଖୁବ୍ ବ୍ୟଗ୍ର, ବ୍ୟସ୍ତ । କିନ୍ତୁ କନ୍ୟାପକ୍ଷ ଜ୍ୱାଇଁ ଦେଖି ବେଶ୍ ଖୁସି । ସେଥିପାଇଁ ଧୀରସ୍ଥିର ଭାବରେ ସେମାନେ ଆଗେଇ ଥା'ନ୍ତି । ଫଳରେ ସବୁ କଥାରେ ଡେରି । ବିଳମ୍ବ । ରାତି ଆସି ପାହିବାକୁ ହେଲା । କିନ୍ତୁ ବାହାଘର ସରିଲା ନାହିଁ । ସେତେବେଳକୁ ମୁଁ ଉଚ୍ଛନ୍ନ । ଯେମିତି ବେଦୀରୁ ଆସିଛି, ମୁଁ ଆସିବାକୁ ବାହାରିଲି । ବରଯାତ୍ରୀମାନେ ମୋ' ବାଟରୁ ଘେରିଗଲେ । ବାହାଘର ସରିବା ପର୍ଯ୍ୟନ୍ତ ରହିବାକୁ ମୋତେ ଅନୁରୋଧ କଲେ । ମୁଁ ସେମାନଙ୍କ କଥା ରଖିଲି ନାହିଁ । ସେମାନେ ବର ପୋଷାକ ମୋ' ଦେହରୁ ବାହାର କରିନେଲେ । ମଙ୍ଗୁଳା ସୂତାଟି ମୋ' ହାତରେ ରହିଗଲା ।

ସେଠୁ ମୁଁ ଏକମୁହାଁ ହୋଇ ନଅର ବାହାରକୁ ଧାଇଁଲି । ଆମେ ଯେଉଁ ଗଛରେ ଯାଇଥିଲୁ, ସେ ଗଛ ସେଇଠି ଥିଲା । ମୁଁ ତା' ପାଖ ବୁଦା ମୂଳେ ଲୁଚି ରହିଲି । ଅଳ୍ପ ସମୟ ପରେ ମୋର

ସ୍ତ୍ରୀ ଓ ଶାଶୁ ଆସିଲେ । ଡେରି ହୋଇ ଯାଇଥିବାରୁ ସେମାନେ ବି ତରତର ହେଉଥାନ୍ତି । ସେମାନେ ସିଧା ଯାଇ ଗଛରେ ଚଢ଼ିଲେ । ମୁଁ ବି ଆସି ତଳ ଡାଳାଟିରେ ବସିଲି । ସେମାନଙ୍କର ଆଦେଶ ପାଇ ଗଛ ଉଡ଼ି ଉଡ଼ି ଚାଲିଲା । ଯେଉଁଠୁ ଯାଇଥିଲା ସେଠାକୁ ଫେରି ଆସିଲା ।

ଗଛ ରହିବା ମାତ୍ରେ ମୁଁ ଗଛରୁ ଓହ୍ଲାଇ ପଡ଼ିଲି । ଘରକୁ ଆସି ବିଛଣାରେ ଶୋଇଗଲି । କିନ୍ତୁ ମୋ' ଦେହରେ ଲାଗିହୋଇ-ଥିବା ଅତର ବାସ୍ନାରେ ଘରଟି ମହକି ଗଲା ।

ଘରେ ପଶୁ ପଶୁ ମୋ' ସ୍ତ୍ରୀ ଅତର ବାସ୍ନା ବାରିଲା । ସେ ଗୋଟା ସୁଦ୍ଧା କଳା ପଡ଼ିଗଲା । ମୁଁ ଲକ୍ଷ୍ୟ କରି ଜାଣିଲି ଯେ, ବାହାଘରଠାରେ ତା'ର ଯେଉଁ ସନ୍ଦେହ ଟିକକ ଥିଲା, ତା' ଆଉ ଏବେ ନାହିଁ ।

ମୁଁ ଆସିବା ପରେ ବରଯାତ୍ରୀମାନେ ମହା ଅଡୁଆରେ ପଡ଼ିଲେ । ବର କରିବା ପାଇଁ ମୋ' ଚେହେରା ସହିତ ମେଳ ଖାଉଥିବା ଆଉ ଜଣେ ଯୁବକକୁ ସେମାନେ ଖୋଜିଲେ । କାହାକୁ କିନ୍ତୁ ପାଇଲେ ନାହିଁ । ସେମାନଙ୍କର ଉପାୟ ଆଉ ନ ଥିଲା । ସେମାନେ ବାଧ୍ୟ ହୋଇ ପ୍ରକୃତ ବରକୁ ବରବେଶ କଲେ । ତାକୁ ବେଦୀକୁ ପଠାଇଲେ । ତାକୁ ଦେଖି ସମସ୍ତେ ବିଚଳିତ । ରାଜଜେମା ବରକୁ ଦେଖି ଖୁବ୍ ରାଗିଗଲେ । ତାଙ୍କୁ ଯେ ଠକା ହୋଇଆହେଉଛି, ସେ ତାହା ଅନୁଭବ କଲେ । ରାଗରେ ନିଜର ମୁକୁଟକୁ ଫିଙ୍ଗି-ଦେଲେ । ଦ୍ରୁତ ପଦରେ ସେ ବେଦୀରୁ ପଳାଇଗଲେ । ତାଙ୍କୁ ବେଦୀକୁ ଆସିବାକୁ ଅନୁରୋଧ କରିବାକୁ କେହି ସାହସ କଲେ ନାହିଁ ।

ରାଜଜେମାଙ୍କ ବ୍ୟବହାର ଦେଖି ବରଯାତ୍ରୀମାନେ ଗୁମ୍ନାଆ ।

ଯେ ଯୁଆଡ଼େ ପଳାଇଲେ । ରାଜପୁତ୍ର ଶିଶୁପାଳ ହୋଇ ସ୍ୱଦେଶକୁ ଫେରିଗଲେ ।

ରାଜଜେମା ମଙ୍ଗୁଳା ହୋଇ ରହିଗଲେ । ସେ ଯେ ଆଉ ବାହା ହୋଇ ପାରିବେ ନାହିଁ, ଏ କଥା ରାଜା ଓ ରାଜଜେମା ଜାଣିଥିଲେ । ଝିଅର ଦୁର୍ଦ୍ଦଶା ପାଇଁ ରାଜା ଯେ ଦାୟୀ, ଏଥିରେ ରାଜାଙ୍କର ସନ୍ଦେହ ନଥିଲା । ସେଥିପାଇଁ ସେ ନିଜକୁ ଜମା କ୍ଷମା ଦେଇପାରୁ ନ ଥିଲେ । ଝିଅକୁ କିପରି ସୁଖରେ ରଖିବେ, ଏହାହିଁ ତାଙ୍କର ଏକମାତ୍ର ଚିନ୍ତା ଥିଲା । ସେଥିପାଇଁ ସେ ଗୋଟିଏ ସୁନ୍ଦର ପ୍ରାସାଦ ନିର୍ମାଣ କଲେ । ବହୁ ଦାସୀ ପରିଚାରିକାଙ୍କୁ ନିଯୁକ୍ତ ଦେଲେ । ଝିଅକୁ ସେଠାରେ ରହିବାର ସୁ-ବନ୍ଦୋବସ୍ତ କରି ଦେଲେ ।

ଏଣେ ମୋ ସ୍ତ୍ରୀ ସେଇଦିନୁ ମୋତେ ବିଶ୍ୱାସ କଲା ନାହିଁ । ମୁଁ ଯେ ଗୁଣି ଜାଣେ, ଏଥିରେ ସେ ଦୃଢ଼ । ମୋ ସାଥିରେ ରହିବାକୁ ସେ ଆଉ ନିରାପଦ ମଣିଲା ନାହିଁ । ଗୁଣିଆମାନଙ୍କର ପରାମର୍ଶ ନେଲା । ଶେଷରେ ଗୁଣୀ ଦ୍ୱାରା ମୋତେ ଗୋଟିଏ ଶୁଆ କରିଦେଲା । ମୋତେ ନେଇ ଘୋର ଜଙ୍ଗଲରେ ଛାଡ଼ି ଦିଆଗଲା ।

ମୁଁ ଜଣେ ମଣିଷ । ଶୁଆର ରୂପ ଖାଲି ନେଇଥିଲି । ଶୁଆ ଜୀବନଯାପନ କରିବାଟା ମୋତେ ବାଧିଲା । ମୁଁ କୌଣସି ଜାଗାରେ ସ୍ଥିର ହୋଇ ରହିପାରିଲି ନାହିଁ । ଜଙ୍ଗଲରେ ଖାଲି ଘେରି ପକାଇଲି । ଏମିତି ବୁଲୁ ବୁଲୁ ମୁଁ ଦେଖିଲି—ଗୋଟିଏ ଜାଗାରେ ବହୁ ଶୁଆ ବସିଛନ୍ତି । ସେମାନେ ସମସ୍ତେ ଚିନ୍ତିତ । ଦୁଃଖରେ ମ୍ରିୟମାଣ । ଶୁଆମାନଙ୍କର ସାମୂହିକ ଦୁଃଖର କାରଣ ଜାଣିବାକୁ ମୋର ଭାରି ଇଚ୍ଛା ହେଲା । ମୁଁ ସେଇଠି ଅଟକିଲି । ଗୋଟିଏ ଶୁଆ ପାଖରେ ବସିଲି । ଘଟଣା ବିଷୟରେ ପଚାରିଲି । ସେ କହିଲା ଯେ,

ତାଙ୍କର ରାଜା ମରିଯାଇଛି । ରାଜା ହେବାକୁ ତାଙ୍କ ଭିତରେ କେହି ନାହାନ୍ତି । କିଏ ସବୁ ଶୁଆଙ୍କୁ ଚଳାଇବ, ସେଇଟା ଗୋଟିଏ ଚିନ୍ତାର ବିଷୟ । ସେଥିପାଇଁ ସବୁ ଶୁଆମାନେ ବିବ୍ରତ ଓ ଚିନ୍ତିତ ।

ଏକଥା ଶୁଣି ମୁଁ କହିଲି—"ତୁ ସେମାନଙ୍କୁ କହ, ଯେ ମୁଁ ଏ ଦାୟିତ୍ୱ ନେବାକୁ ରାଜି । ସେମାନେ ମୋ ମାରଫତରେ କିଛି ଦିନ ରହନ୍ତୁ । ଅସୁବିଧା ହେଲେ ମୁଁ ଚାଲିଯିବି ।"

ସେ ଶୁଆଟି ମୋ' କଥା ସେମାନଙ୍କ ଆଗରେ ଉପସ୍ଥାପିତ କଲା । ପ୍ରଥମେ ସେମାନଙ୍କ ମଧ୍ୟରୁ କେତେକ ଆପତ୍ତି କଲେ । କିନ୍ତୁ ତାଙ୍କୁ ରାଜା ମିଳୁ ନଥିଲା । ସେଥିପାଇଁ ମୋତେ ରାଜା ହିସାବରେ ଗ୍ରହଣ କରିବାକୁ ସେମାନେ ବାଧ୍ୟ ହେଲେ । ମୋର ଗତିବିଧି ଉପରେ ସେମାନଙ୍କର କଡ଼ା ନଜର ଥିଲା । ଆସ୍ତେ ଆସ୍ତେ ସେମାନେ ଦେଖିଲେ ଯେ ମୋ ନିଷ୍ପତ୍ତି ନିର୍ଭୁଲ । ମୋ ଦ୍ୱାରା କାହାର କିଛି କ୍ଷତି ହେଉ ନାହିଁ । ମୁଁ ସମଦର୍ଶୀ । ସମସ୍ତଙ୍କର ମଙ୍ଗଳ ମୋର ଲକ୍ଷ୍ୟ । କୌଣସି କାମରେ ମୋର ସ୍ୱାର୍ଥ କଣିକାଏ ବି ନାହିଁ । କାଳକ୍ରମେ ମୋତେ ସେମାନେ ରାଜାର ସମ୍ମାନ ଦେଲେ । ସେମାନେ ସମସ୍ତେ ମୋ ଉପରେ ସନ୍ତୁଷ୍ଟ । ସମସ୍ତେ ମୋ ଉପରେ ନିର୍ଭରଶୀଳ । ଏହାହିଁ ମୁଁ ଅନୁଭବ କଲି ।

ଆମ ଦଳରେ ଶୁଆଙ୍କ ସଂଖ୍ୟା ମୋତେ ମିଶାଇ ଶହେ । ସମସ୍ତଙ୍କର ଦୁଃଖ ସୁଖ ମୁଁ ଦିନସାରା ବୁଝେ । ମୁଁ ଯୁଆଡ଼େ ଯାଏ ସେମାନଙ୍କୁ ମୋ ସାଥିରେ ନିଏ । ମୋ ନଜରର ବାହାରକୁ ସେମାନଙ୍କୁ ଛାଡ଼େ ନାହିଁ ।

ଦିନେ ଆମେ ଉଡ଼ି ଯାଉଥିଲୁ । ଗୋଟିଏ ଜାଗାରେ ଶସ୍ୟ ସବୁ ବିଛା ହୋଇଥିବାର ଦେଖିଲୁ । ସମସ୍ତଙ୍କର ସେ ଶସ୍ୟକୁ ଖାଇବାକୁ ଲୋଭ ହେଲା । ମୁଁ ସେମାନଙ୍କୁ ମନାକଲି । ଆଶ୍ଚର୍ଯ୍ୟ,

ସେମାନେ ମୋ କଥା ମାନିଲେ ନାହିଁ । ବିଦ୍ରୋହ କଲେ । ସେମାନେ ଯାଇ ସେଠାରେ ଶସ୍ୟ ଖାଇଲେ । ସେମାନେ ଯେ ବିପଦରେ ପଡ଼ିଗଲେ, ଏ କଥା ମୁଁ ଜାଣିଲି । ଏ ଅବସ୍ଥାରେ ସେମାନଙ୍କୁ ଛାଡ଼ି ଯିବାକୁ ମୁଁ ପସନ୍ଦ କଲି ନାହିଁ । ମୁଁ ଗଲି । ସେମାନଙ୍କ ସାଥୀରେ ଖାଦ୍ୟ ଖାଇଲି । ଆମେ ଦେଖିଲୁ ଯେ, ଆମେମାନେ ଜାଲରେ ଛନ୍ଦି ହୋଇ ଗଲୁଣି । ମୁକୁଳିବାର ଉପାୟ ନାହିଁ । ଅଳ୍ପ ସମୟ ପରେ ବ୍ୟାଧ ଆସିବ । ଗୋଟି ଗୋଟି କରି ସମସ୍ତଙ୍କ ବେକ ମୋଡ଼ିବ । ଏ କଥାରେ ନିଶ୍ଚିତ ହୋଇଯିବା ପରେ ସବୁ ଶୁଆ ପରସ୍ପରକୁ ଦୋଷ ଦେଲେ । କଳି, ଝଗଡ଼ା ସେମାନଙ୍କ ମଧ୍ୟରେ ଚାଲିଲା । କେତେକ ବି ଭୟରେ କାନ୍ଦିବାକୁ ଆରମ୍ଭ କଲେ । ମୁଁ ସେମାନଙ୍କୁ କହିଲି—"ଅଳ୍ପ ସମୟ ପରେ ବ୍ୟାଧ ଆସି ଆମକୁ ଗୋଟି ଗୋଟି କରି ମାରିବ । ସେଥିପାଇଁ ତମର ଚିନ୍ତା ନାହିଁ । ପୁଣି କଳି କରୁଛ ? ବେଳ ଥାଉଁ ଥାଉଁ ସାବଧାନ ହୁଅ । ମୁକ୍ତି ପାଇଁ ଚିନ୍ତା କର ।"

ଏହା ଭିତରେ ସମସ୍ତଙ୍କ ମନ ଘରି ଧରି ଯାଇଥିଲା । ମୃତ୍ୟୁ ଭୟରେ ସମସ୍ତେ ମୋତେ କହିଲେ—"ତୁମେ ଯାହା କହିବ, ଆମେ ମାନିବୁ । କପରି ମୁକ୍ତି ମିଳିବ କୁହ ।"

ମୁଁ କହିଲି—"ଗୋଟିଏ ମାତ୍ର ବାଟ ଅଛି । ଆମେମାନେ ମଲାପରି ପଡ଼ି ରହିବା । ବ୍ୟାଧ ଆସି ଆମକୁ ଦେଖି ଭାବିବ ଯେ, ଆମେମାନେ ମୃତ । ଆମ ବେକ ମୋଡ଼ିବାର ଆଉ ଆବଶ୍ୟକତା ରହିବ ନାହିଁ । ତେଣୁ ଆମକୁ ଖୋଲି ସେ ତଳେ ପକାଇଦେବ । ପ୍ରଥମେ ଯେ ତଳେ ପଡ଼ିବ, ସେ ଗଣୁଥିବ । ଯେତେବେଳେ ଶହେଟି ପଡ଼ିବା ଶେଷ ହେବ, ସେ ଇଶାରା ଦେବ, ଆମେ ସମସ୍ତେ ଉଡ଼ି ପଳାଇବା ।"

ମୋ କଥାଟା ସମସ୍ତଙ୍କ ମନକୁ ପାଇଲା । ମୁଁ ଯେମିତି କହିଲି,

ସମସ୍ତେ ସେମିତି ମୃତ ପ୍ରାୟ ପଡ଼ି ରହିଲେ । ବ୍ୟାଧ ଆସିଲା । ଆମମାନଙ୍କୁ ଦେଖି ସେ ଭାରି ଖୁସି । ଜାଲ ଖୋଲି ଗୋଟି ଗୋଟି କରି ଶୁଆମାନଙ୍କୁ ଫିଙ୍ଗି ଚାଲିଲା । ଅନେକଗୁଡ଼ା ଶୁଆଙ୍କୁ ମୁକ୍ତ କରି ସାରିଲାପରେ ତା'ର ଦା'ଟା ଖସି ପଡ଼ିଲା । ଶବ୍ଦ ଶୁଣି ହେବାରୁ ପ୍ରଥମେ ପଡ଼ିଥିବା ଶୁଆଟି ଇଶାରା ଦେଲା । ସମସ୍ତେ ଉଡ଼ି ଚାଲିଗଲେ ମୁଁ କେବଳ ବାକି ରହିଲି ।

ଜାଲରେ ପଡ଼ିଥିବା ଶୁଆ ସବୁ ତା' ଆଖି ଆଗରେ ଉଡ଼ି ଚାଲିଗଲେ, ବ୍ୟାଧ ଏଥିପାଇଁ ଖୁବ୍ ରାଗିଗଲା । ସେଇ ରାଗରେ ମୋର ତଣ୍ଟି ମୋଡ଼ିବାକୁ ସେ ବାହାରିଲା । ମୁଁ ଦେଖିଲି—ମୋତେ ହିଁ ମୋର ଜୀବନ ରକ୍ଷା କରିବାର ଉପାୟ ବାହାର କରିବାକୁ ହେବ । ନହେଲେ ମୁହୂର୍ତ୍ତକ ମଧ୍ୟରେ ମୋର ପ୍ରାଣ ଚାଲିଯିବ । ସେଥିପାଇଁ ମଣିଷ ଭଳି ମୁଁ କହିଲି—"ମୋତେ ମାରିଦେଲେ ମୋର ମାଂସ ଖାଇବୁ କିମ୍ବା ବଜାରରେ ବିକି ଦି'ପଇସା ରୋଜଗାର କରିବୁ । ସେଥିରୁ ଯାହା ମିଳିବ, ତୋର ଦିନକର ଗୁଜୁରାଣ ମେଣ୍ଟିବ କି ନାହିଁ ସନ୍ଦେହ । ମୋ କଥା ମାନ । ମୋତେ ଜୀବନରେ ମାର ନାହିଁ । ମୋର ପରାମର୍ଶ ଅନୁସାରେ କାମକଲେ, ବହୁତ ପଇସା ରୋଜଗାର କରିବୁ । ହୁଏତ ବ୍ୟାଧ ବୃତ୍ତି ବି କରିବାକୁ ତୋତେ ଆଉ ପଡ଼ିବ ନାହିଁ । ସୁଖରେ ସଂସାର କରି ରହିବୁ ।"

ମୋ କଥା ବ୍ୟାଧ ମାନିଲା । ମୋତେ ଘରକୁ ଆଣି ଗୋଟିଏ ପିଞ୍ଜରାରେ ରଖିଲା । ପରଦିନ ସକାଳେ ମୁଁ ତାକୁ କହିଲି —"ଆଜି ଆଉ ଜଙ୍ଗଲକୁ ଚଢ଼େଇ ଧରିବାକୁ ଯାଆ ନାହିଁ । ମୋତେ ଧରି ରାଜାଙ୍କ ପାଖକୁ ଯା' । ସେଠି କହିବୁ ଯେ, ମୁଁ ଏକ ଅଦ୍ଭୁତ ଶୁଆ । ବୁଦ୍ଧି ତା'ର ମଣିଷଠାରୁ ପ୍ରଖର । ସେ ଖାଲି ମଣିଷ ଭଳି କଥା

କହେ ନାହିଁ, ବରଞ୍ଚ ପରାମର୍ଶ ଦିଏ । ରାଜ କାର୍ଯ୍ୟରେ ଏହା ଖୁବ୍ ସାହାଯ୍ୟ କରିବ । ତୁମ୍ଭେ ଏହାକୁ ରଖନ୍ତୁ । ରାଜା ମୋର ଦାମ ପଚାରିଲେ, ତୁ କହିବୁ ଯେ ଶୁଆ ଦାମ ଶୁଆ କହିବ ।”

ବ୍ୟାଧଟି ମୁଁ ଯାହା କହିଥିଲି, ସେଇଆ କଲା । ରାଜା ମୋତେ ମୋର ଦାମ ପଚାରିଲେ । ମୁଁ କହିଲି—“ମୋର ଦାମ ବହୁତ । ଆପଣ ଏକ ସହସ୍ର ସ୍ୱର୍ଣ୍ଣମୁଦ୍ରା ବ୍ୟାଧକୁ ଦେଇ ମୋତେ ରଖନ୍ତୁ । ମୁଁ କଥା ଦେଉଛି, ଏ ଅର୍ଥ ଦେଇଥିବା ଯୋଗୁଁ ଆପଣଙ୍କୁ ଭବିଷ୍ୟତରେ ମନସ୍ତାପ କରିବାକୁ ପଡ଼ିବ ନାହିଁ ।”

ରାଜା ମୋ କଥା ରଖିଲେ । ବ୍ୟାଧକୁ ଉପଯୁକ୍ତ ଅର୍ଥଦେଇ ମୋତେ କିଣିନେଲେ । ସେଇଦିନୁ ମୁଁ ରାଜାଙ୍କ ଉଆସରେ ରହେ । କେହି ନଥିଲା ବେଳେ ରାଜା ମୋ ସାଥିରେ ଗପସପ କରନ୍ତି । ରାଜ୍ୟର ସମସ୍ୟା ସମାଧାନରେ ମୋତେ ସେ ପଚାରନ୍ତି । ମୁଁ ପରାମର୍ଶ ଦିଏ । ରାଜା ବେଳେ ବେଳେ ମନ୍ତ୍ରୀଙ୍କର ପରାମର୍ଶ ଆଡ଼େଇ ଦେଇ ମୋ କଥା ରଖନ୍ତି ।

ରାଜା ଦେଖିଲେ ଯେ, ମୋ ଉପସ୍ଥିତି ତାଙ୍କର ଜଞ୍ଜାଳମୟ ଜୀବନରେ ସୁଖ ଆଣି ଦେଇଛି । ଯେତେ ବଡ଼ ସମସ୍ୟା ଆସିଲେ ବି ତାଙ୍କୁ ସମାଧାନ କରିବାକୁ କଷ୍ଟ ହେଉ ନାହିଁ । ସେ ବେଶ୍ ଆନନ୍ଦରେ ରହୁଛନ୍ତି ।

ରାଜା ଏକଥା ବିଚାର କଲାବେଳେ ମନରେ ତାଙ୍କର ଆସିଲା —ଝିଅ ତାଙ୍କର ଆଜୀବନ ଦୁଃଖରେ କାଟିବ । ସୁଖଶାନ୍ତି ତା' ପକ୍ଷରେ ସ୍ୱପ୍ନ । ମୋତେ ଯଦି ଝିଅକୁ ସେ ଦିଅନ୍ତେ, ହୁଏତ ମୁଁ ତା'ର କଛି ଦୁଃଖ ଲାଘବ କରିପାରନ୍ତି ।

ରାଜା ଆଉ ବିଳମ୍ବ କଲେ ନାହିଁ । ମୋତେ ତାଙ୍କ ଝିଅ ପାଖକୁ ପଠାଇ ଦେଲେ ।

ରାଜକେମାଙ୍କୁ ଦେଖି ଦେଖି ମୁଁ ଚିହ୍ନି ପକାଇଲି । ସେଦିନ ରାତିରେ ମୁଁ ଏହାଙ୍କୁ ବିବାହ କରିଥିଲି । ଶେଷ କର୍ମ ପୂର୍ବରୁ ମୁଁ ଚାଲି ଯାଇଥିଲି । କିନ୍ତୁ ଏ ଯେ ସେ ଅସୁନ୍ଦର ବରକୁ ଆଉ ବିବାହ କରିନାହାନ୍ତି, ଆଉ ମଙ୍ଗୁଳା ହୋଇ ରହିଯାଇଛନ୍ତି—ଏହାହିଁ ମୁଁ ଅନୁମାନ କଲି ।

ରାଜକେମା ବାର୍ତ୍ତାବହଠାରୁ ମୋ ବିଷୟରେ ସବୁକଥା ଶୁଣିଲେ । ଖୁବ୍ ଆଦରରେ ମୋତେ ଓ ମୋର ପିଞ୍ଜରାକୁ ନେଇ ତାଙ୍କ ଶୋଇବା ଘରେ ରଖିଲେ । ମୁଁ ଦେଖିଲି - ରାଜକେମା ସବୁବେଳେ ଦୁଃଖିତ । ମନରେ ତାଙ୍କର ସରାଗ ନଥାଏ । ଏହା ଦେଖି ମୋତେ କାନ୍ଦ ମାଡ଼େ । ମୁଁ ବେଳେ ବେଳେ କାନ୍ଦେ । ମଣିଷ ଆଖିର ଲୁହ ଟୋପା ପରି ମୋ ଆଖିରୁ ଲୁହ ଟୋପା ଖସି ପଡ଼େ । ରାଜକେମା ଏହା ଦେଖନ୍ତି । ସେ ମୋତେ ବାରମ୍ବାର ପଚାରନ୍ତି—"ଶୁଆ, ତୋର କ'ଣ ହୋଇଛି ଯେ, ତୁ ଏତେ କାନ୍ଦୁଛୁ ?" ମୁଁ କିଛି ଉତ୍ତର ଦିଏ ନାହିଁ । ସେ ବସି ମୋତେ ଏକା ଲୟରେ ଚାହିଁ ରହନ୍ତି । ମୋ ଗୋଡ଼ରେ ବନ୍ଧା ହୋଇଥିବା ସୂତାକୁ ସେ ଦେଖିଲେ । ତାକୁ ସେ ବାହାର କରି ଆଣିଲେ । ସେ ଯେ ଗୋଟିଏ ମଙ୍ଗୁଳା ସୂତା ଏଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । କିନ୍ତୁ ଏ ସୂତା କିପରି ମୋ ଗୋଡ଼ରେ ବନ୍ଧା ହେଲା, ତାହା ତାଙ୍କୁ ବିସ୍ମିତ କଲା । ମୋତେ ଯେତେ ସେ ବିଷୟରେ ପଚାରିଲେ, ମୁଁ କିଛି କହିଲି ନାହିଁ ।

ସେଇଦିନୁ କେଜାଣି କାହିଁକି ସେ ମୋ ପ୍ରତି ଖୁବ୍ ଆକୃଷ୍ଟ ହୋଇ ପଡ଼ିଲେ । ମୋତେ ସେ ଆଉ ପିଞ୍ଜରାବଦ୍ଧ କଲେ ନାହିଁ । ମୋତେ ବାହାର କରି ଆଣି ତାଙ୍କ ଉପରେ ବସାନ୍ତି । ମୋତେ ବେଳେ ବେଳେ ଆଉଁସନ୍ତି । ନାନା ପ୍ରକାର କଥା ପଚାରନ୍ତି ।

ଆଲୋଚନା ହୁଏ । କିନ୍ତୁ ଯେତେବେଳେ ସେ ଜାଣିଲେଇ ମୋର ଦୁଃଖର କାରଣ ପତ୍ନୀରତ୍ନ, ମୁଁ ଚୁପ୍ ରହେ । ଦିନେ ସେ ମୋତେ ଆଉଁସୁଥିଲେ । ହଠାତ୍ ତାଙ୍କ ଆଉଁସାରେ ମୋ ମୁଣ୍ଡରେ ଥିବା ମନ୍ତ୍ରୀ କଣ୍ଟାଟି ବାହାରି ଆସିଲା । ମୁଁ ମୋର ପୂର୍ବ ରୂପ ଫେରି ପାଇଲି । ମୋତେ ସେ ଚିହ୍ନି ପାରିଲେ । ଆମ ଦୁହିଁଙ୍କର ପୁନର୍ମିଳନ ହେଲା ।

ରାଜା ଏ ଖବର ପାଇ ଖୁସି । ଦେଶରେ ମହୋତ୍ସବ ହେଲା । ସେଇଦିନୁ ଆମେ ଦୁହେଁ ଶାନ୍ତିରେ ଅଛୁ । ରାଜା ମରିଗଲେ । ମୁଁ ଉତ୍ତରାଧିକାରୀ ଭାବରେ ରାଜା ହେଲି । ତୁମେ ମନେରଖ, "କାହାର ଦୁଃଖ ସବୁଦିନ ଲାଗି ରହେ ନାହିଁ । ଦିନେ ନା ଦିନେ ତାହା ଚାଲିଯିବ, ଭଲ ଦିନ ଆସିବ । ତୁମ ଭାଗ୍ୟ ବଦଳିଯିବ । ସେଥିପାଇଁ ଆଶାବାଦୀ ହୁଅ । ନିରାଶ ହୋଇ ମନ ଦୁଃଖ କର ନାହିଁ ।"

ଚାଷୀ ଦୁଇଟି ରାଜାଙ୍କ କଥା ଶୁଣିଲେ । ସବୁ ଦୁଃଖ ସହିଗଲେ ସୁଖ ଆସେ, ଏହାହିଁ ତାଙ୍କର ଧାରଣା ହେଲା । ସେମାନେ ତାଙ୍କ ଘରକୁ ଫେରିଗଲେ ।



# ଭାଇ ଓ ଭଉଣୀ

ବହୁ ଦିନ ତଳର କଥା । ଚାଷୀଟିଏ ଥିଲା । ସେ ଭାରି ଗରିବ । ତା'ର ପୁଅଟିଏ ଆଉ ଝିଅଟିଏ । ସେମାନେ ତା' ସ୍ତ୍ରୀର ନୟନର ପିତୁଳା ।

ଚାଷୀଟିର କେତୋଟି ଛେଳି ଓ ମେଣ୍ଢା ଥିଲା । ପିଲାମାନେ ସେମାନଙ୍କୁ ଜଙ୍ଗଲକୁ ଚରାଇ ନେଉଥିଲେ । ଘର କାମରେ ମା'ର ସେମାନେ ଡାହାଣ ହାତ । ସମସ୍ତେ ମିଳିଲେ ବିଲକୁ ଯାଇ ବାପ

ମା' ସାଥୀରେ ସେମାନେ କାମ କରନ୍ତି । ଖାଇବାକୁ ଅଭାବ ଥିଲେ କ'ଣ ହେଲା, ଘରେ କିନ୍ତୁ ସୁଖ-ଶାନ୍ତି ପୂରି ରହିଥିଲା ।

ସେତେବେଳେ ଡାକ୍ତର କି କବିରାଜ ନ ଥିଲେ । ଲୋକେ ଗୁଣି ଗାରେଡ଼ି ଉପରେ ନିର୍ଭର କରୁଥିଲେ । ଥରେ ସେ ଗାଁରେ ହଇଜା ଲାଗିଲା । ବହୁ ଲୋକ ମରିଗଲେ । ଗୃଷୀଟିର ସ୍ତ୍ରୀ ସେମାନଙ୍କ ମଧ୍ୟରୁ ଜଣେ ।

ସ୍ତ୍ରୀର ମୃତ୍ୟୁ ଗୃଷୀଟି ଉପରେ ଅକାଳରେ ବଜ୍ରପାତ କରି-ଦେଲା । ସେ ସହିପାରିଲା ନାହିଁ । ଏକଦମ ଭାଙ୍ଗି ପଡ଼ିଲା । ଅନ୍ନ ଜଳ ତ ସ୍ପର୍ଶ କଲା ନାହିଁ । ଯେଉଁଠି ବସିଲା, ସ୍ତ୍ରୀ କଥା ଭାବିହେଲା । ପିଲା ଦି'ଟାଙ୍କର କଥା ତା'ଠାରୁ ବଳେ । ସେମାନେ ମା' ମା' ବୋଲି ସବୁବେଳେ କାନ୍ଦୁଥିଲେ । ତାଙ୍କର କଣ୍ଠା ରହିଲା । ଲୋକେ ଗୃଷୀଟିକୁ ବୁଝାଇଲେ—"ଏ ପରିସ୍ଥିତିରେ ତା'ର ପିଲାଙ୍କ କଥା ଚିନ୍ତା କରିବା କଥା । ସେ ନ ଖାଇ ନ ପିଇ ରହିପାରିବ, କିନ୍ତୁ ପିଲାଙ୍କର ଅବସ୍ଥା କ'ଣ ହେବ ? ତା'ର ଭାବିବା ଉଚିତ ।"

ସେ ପିଲାଙ୍କ ପାଇଁ ପୁଣି ଧନୁ ଧରିଲା । ସେମାନଙ୍କର ତତ୍ତ୍ୱ ନେଲା ।

ସମସ୍ତ ସବୁ ରୋଗ ହରେ । ସମୟ ଗଡ଼ିବା ସାଙ୍ଗେ ସାଙ୍ଗେ ଗୃଷୀଟିର ଦୁଃଖ କମି ଆସିଲା । ତା'ର ମନ ପରିବର୍ତ୍ତନ ହୋଇଗଲା । ପିଲାଙ୍କର ତତ୍ତ୍ୱ ନେବାପାଇଁ ଆଉ ଗୋଟିଏ ନେସ ବାହାହୋଇ ପଡ଼ିଲା ।

ଗୃଷୀର ଦ୍ୱିତୀୟ ସ୍ତ୍ରୀ ସୁନ୍ଦରୀ । ଗୁଳକ ବ । ପିଲା ଦି'ଟାଙ୍କୁ ସେ ଦେଖି ସହିପାରେ ନାହିଁ । ଯାହାହେଉ ସେମାନେ ଚଳି ଯାଉ-ଥିଲେ । ଏହା ଭିତରେ ତା'ର ପୁଅଟିଏ ହେଲା । ସେଇଦିନୁ ପିଲାଙ୍କର ଛୁଇ ପଡ଼ିଲେ, ତାର ନାହିଁ ଡ଼ଏଁ । ସେମାନଙ୍କୁ ପେଟ

ପୂରା ଖାଇବାକୁ ଦିଏ ନାହିଁ । ଛେଳି ଜଗିବାକୁ ଦିନସାରା ସେମାନଙ୍କୁ ଜଙ୍ଗଲକୁ ପଠାଇଦିଏ । ମୁଠିଏ ଛତୁ ସହିତ ପାଉଁଶ ବେଶି ମିଶାଇଦିଏ । ସେସବୁ ଗୋଟିଏ କନାରେ ବାନ୍ଧି ପିଲଙ୍କୁ ଧରାଇ ଦିଏ । କହେ—"ଭୋକ ହେଲେ, ଏହାକୁ ଜଙ୍ଗଲରେ ଖାଇବ ।"

ପିଲା ଦି'ଟା ସାଧାରଣ ପିଲଙ୍କଠାରୁ ଖୁବ୍ ଉଚ୍ଚରେ । ସବୁ ଦୁଃଖ କଷ୍ଟ ସେମାନେ ସହିଯା'ନ୍ତି । ଟିକିଏ ହେଲେ ଆପତ୍ତି କରନ୍ତି ନାହିଁ । ଏମନେ କି ମା' ବିରୁଦ୍ଧରେ ବାପାଙ୍କ ପାଖରେ ତୁଣ୍ଡ ଖୋଲନ୍ତି ନାହିଁ । ବାପା କିନ୍ତୁ ସବୁ ଜାଣେ । ସେ ତ ମା'ହାତରେ କ୍ରୀଡ଼ନକ । ସବୁ ଜାଣି ନ ଜାଣିଲା ପରି ରହେ । ମନ ତାର ଗୋଳେଇ ଘାଣ୍ଟି ହୁଏ । ଯେତେହେଲେ ସେମାନେ ତା'ର ତ ପିଲା । ତାଙ୍କୁ ସାହାଯ୍ୟ କରିବାକୁ ସେ ଆଗ୍ରହୀ । କିନ୍ତୁ ସ୍ତ୍ରୀକୁ ତାର ଭାରି ଡର । ସ୍ତ୍ରୀ ଡରରେ ଆହା ପଦେ ବି ପିଲଙ୍କୁ କହେ ନାହିଁ ।

ପିଲା ଦି'ଟା ପରସ୍ପରକୁ ଖୁବ୍ ଭଲ ପାଉଥିଲେ । ଏମିତିକି ନିଜ ଜୀବନଠାରୁ ବଳିକରି । ସେଥିପାଇଁ ଜଣେ ଅନ୍ୟ ଜଣକୁ ନ ଦେଖିଲେ ବାଉଳା ହୋଇ ଯାଉଥିଲେ । ଏଇ ସ୍ନେହ, ଶ୍ରଦ୍ଧା ଓ ଆନ୍ତରିକତା ସେମାନଙ୍କର ବଞ୍ଚିବା ପାଇଁ ପାଥେୟ । ଆକର୍ଷଣ । ସେଥିପାଇଁ ସାବତ ମା'ର ଅତ୍ୟାଚାରକୁ ସେମାନେ ସହିପାରୁଥିଲେ । କିଛି ପ୍ରତିବାଦ ବି କରୁ ନଥିଲେ ।

ଥରେ ତାଙ୍କର ବାପା ଘରେ ନଥିଲା । ଭାଇ-ଭଉଣୀ ଦୁହେଁ ଛେଳି ଓ ମେଣ୍ଢା ଚରାଇବାକୁ ଜଙ୍ଗଲକୁ ଯାଇଥିଲେ । ଫେରୁଫେରୁ ସନ୍ଧ୍ୟା ହୋଇଗଲା । ଘରେ ପହଞ୍ଚି ସେମାନେ ଦେଖିଲେ ଯେ, ଗୋଟିଏ ଛେଳି ଗୋଠରେ ଫେରି ନାହିଁ । ସାବତ ମା' ଏକଥା ଜାଣିଲା । ସେ ପିଲାମାନଙ୍କୁ ରାଗିକରି କହିଲା—"ଯା, ଗୋଠରେ ନ ଥିବା ଛେଳିକୁ ଖୋଜିକରି ଆଣ ।"

ଶୀତ ରାତି । ଅନ୍ଧାର ମାଡ଼ି ଆସିଲାଣି । ଭାଇ, ଭଉଣୀଙ୍କର ଉପାୟ ନଥିଲା । ସେମାନଙ୍କର ସାବତ ମା'କୁ ତ ଘାର ଭୟ । ବାଧ୍ୟ ହୋଇ ଉଭୟେ ଜଙ୍ଗଲକୁ ଗଲେ । ଛେଳକୁ ଖୁବ୍ ଖୋଜିଲେ । କେଉଁଠି ଛେଳର ସନ୍ଧାନ ପାଇଲେ ନାହିଁ । ରାତି ବେଶି ହେବାରୁ ଶୀତ ବି ପ୍ରବଳ ହେଲା । ସେମାନଙ୍କର ଦେହରେ ତ ଗରମ ପୋଷାକ ନଥିଲା । ଶୀତ ତାଙ୍କ ପକ୍ଷରେ ଅସହ୍ୟ । ନଈ କୂଳରେ ଗୋଟିଏ ପଥର ଥିଲା । ଭାଇ-ଭଉଣୀ ଜାକିଜୁକି ହୋଇ ତା'ଉପରେ ବସିଲେ । ଶୀତ ସେମାନେ ଆଉ ସମ୍ଭାଳି ପାରିଲେ ନାହିଁ । ପରସ୍ପର ପରସ୍ପରକୁ ଜାବୋଡ଼ି ଧରିଲେ ।

ଚରନ୍ଦନ ବାପ ଘରକୁ ଫେରିଲା । ପୁଅ ଝିଅଙ୍କୁ ସେ କେଉଁଠି ଦେଖିଲା ନାହିଁ । ସେ ବ୍ୟସ୍ତ ହୋଇ ଉଠିଲା । ପିଲାମାନେ ଛେଳି ଧରି ରାତିରେ ନ ଫେରିବାରୁ ସାବତ ମା' ତ ରାଗରେ ପଞ୍ଚମ । ସେ ସ୍ୱାମୀ ଆଗରେ ଗୁହାରି କରି କହିଲା—"ପିଲାମାନେ କାଲି ଗୋଟିଏ ଛେଳି ଜଙ୍ଗଲରେ ଛାଡ଼ି ଆସିଥିଲେ । ମୁଁ ସେମାନଙ୍କୁ ସେଇ ଛେଳିଟି ଆଣିବାକୁ ପଠାଇଲି । ରାତି ଗଲା । ଏତେ ବେଳ ହେଲାଣି, ତମ ଗୁଣବନ୍ତ ପିଲା ଦି'ଟାଙ୍କର ଦେଖା ନାହିଁ ।"

ବାପ ଏକଥା ଶୁଣି ଗୁଣୁଆ ହୋଇଗଲା । ତା' ମନକୁ ପାପ ଛୁଇଁଲା । ସେ ଧାଇଁଲା ଜଙ୍ଗଲକୁ । ପିଲାମାନଙ୍କୁ ଖୋଜିବା ସକାଶେ । ସେଠି ସେ ବହୁତ ଖୋଜିଲା । ଶେଷକୁ ସେ ଦେଖିଲା— ନଈ କୂଳରେ ପଥର ଉପରେ ଭାଇ-ଭଉଣୀ ଦୁଇଜଣ ପରସ୍ପରକୁ ଧରି ବସିଛନ୍ତି । ବାପ ତାଙ୍କ ପାଖକୁ ଗଲା । ସେମାନଙ୍କ ଦେହରେ ହାତ ଦେଲା । ସେ ଦେଖିଲା—ପୁଅଟି ମୃତ । ଝିଅଟିର ଚେତା ନାହିଁ । ସେ ଝିଅଟିକୁ ଘରକୁ ଆଣିଲା । ସେଠି ତା'ର ଚେତା କଲା । ଭାଇ ମରିଯିବା କଥା ଜାଣି ଭଉଣୀଟି ଖୁବ୍ କାନ୍ଦିଲା । ସେଇ

ହନୁ ସେ ଚୁପ୍‌ଚାପ୍ ହୋଇ ବସେ । ଖାଇବାକୁ ତା'ର ଆଗ୍ରହ ନଥାଏ । ବାଧ୍ୟ କଲେ ଦି'ଟା ଖାଏ ।

ପୁଅର ମୃତ୍ୟୁରେ ବାପ ଭାଙ୍ଗି ପଡ଼ିଲା । ସବୁବେଳେ ସେ ପୁଅପାଇଁ ଝୁରିହେଲା । ପୁଅ ପ୍ରତି ତା'ର ଯେଉଁ ଅନ୍ୟାୟ ସେ କରିଛି ସେକଥା ସେ ଭୁଲିପାରିଲା ନାହିଁ । ପୁଅକୁ ମନେରଖିବା ପାଇଁ ଯେଉଁଠି ପୁଅ ମରିଥିଲା, ସେଠି ସେ ତାର ଗୋଟିଏ ସମାଧି ମନ୍ଦିରଟିଏ କରିଦେଲା ।

ଯେତେବେଳର କଥା କୁହାଯାଉଛି, ସେତେବେଳେ ବାଲ୍ୟ ବିବାହ ଚାଲିଥିଲା । ଝିଅଟିକୁ ବାହା ଦେବାକୁ ସାବତ ମା'ର ଏକା ଜିଦ୍ । ଚାଷୀ ବି ଉପାୟହୀନ । ସେ ତା ସ୍ତ୍ରୀ କଥାରେ ରାଜି ହେବାକୁ ବାଧ୍ୟ ହେଲା । ଏଥର ସାବତ ମା'ର ପାଳି । ଜ୍ୱାଇଁ ଠିକ୍ କରିବା ତା' ହାତରେ । ବାଛି ବାଛି ସେ ଗୋଟିଏ ବୁଢ଼ା ବର ଠିକ୍ କଲା । ବାପା ଏହା ଦେଖି କାଠ ପାଲଟିଗଲା । କ'ଣ ବା ସେ ଆଉ କରିବ ? ସ୍ତ୍ରୀକୁ ଜବାବ ଦେବା ତା'ର ଶକ୍ତିର ବାହାରେ । ସେ ମନେ ମନେ ଖୁବ୍ ଦୁଃଖ କଲା । ସ୍ତ୍ରୀ ଆଗରେ ପ୍ରତିବାଦ କରି ପାରିଲା ନାହିଁ । ଏକଥା ଝିଅ ଶୁଣିଲା । ସେ ବାହା ହେବାକୁ ମନା କରିଦେଲା । ବାପ ଓ ସାବତ ମା' ମହା ଅଡୁଆରେ ପଡ଼ିଲେ । ଝିଅକୁ ବୁଝାଇ ରାଜି କରାଇବାକୁ ସାବତ ମା' ଚାଷୀଟି ପାଖରେ ଜିଦ୍‌ଧରି ବସିଲା । ଚାଷୀଟି ନାଚାର । ସେ ଝିଅକୁ ବହୁତ ବୁଝାଇଲା । ଝିଅକୁ ରାଜି ହେବାକୁ ବାଧ୍ୟ କଲା । ବାପର ଦୟନୀୟ ଅବସ୍ଥା ଦେଖି ଝିଅଟି ତରଳିଗଲା । ବାପା କଥାରେ ରାଜି ହେଲା । କିନ୍ତୁ ଗୋଟିଏ ସର୍ତ୍ତରେ । ଶାଶୁଘରକୁ ଯିବା ବାଟରେ ଭାଇର ସମାଧି ପାଖକୁ ସେ ଯିବ । ଭାଇର ସମାଧିରେ ଫୁଲ ଚଢ଼ାଇବ ।

ବାପ ଓ ସାବତ ମା' ଭାବିଲେ—ଏହା ଏକ ଉତ୍ତମ କଥା ।

ଏଥିରେ ଆପତ୍ତି କରିବାର କିଛି ନାହିଁ । ଝିଅର କଥା ରହିଲା । ବିବାହ ସ୍ଥିର ହୋଇଗଲା ।

ବିବାହ ଦିନ । ଝିଅ ବିଦା ହୋଇ ଶାଶୂଘରକୁ ଗଲା । ବାଟରେ ଭାଇର ସମାଧିଠାରେ ସବାରି ଅଟକିଲା । ଝିଅଟି ସବାରିରୁ ଓହ୍ଲାଇ ଭାଇର ସମାଧି ପାଖକୁ ଗଲା । ସାଥିରେ ଆଣିଥିବା ଫୁଲ ସମାଧିରେ ଚଢ଼ାଇଲା । ତା'ପରେ ସେ ସମାଧି ପାଖରେ ଖୁବ୍ କାନ୍ଦିଲା । କି ଗୁହାରିଫାଟା ସେ କାନ୍ଦ ! ପଥର ବି ସେଥିରେ ତରଳିଯିବ । ସେଠାରେ ଯେତେ ଲୋକ ଥିଲେ ସମସ୍ତେ କାନ୍ଦିଲେ । ଝିଅଟି କାନ୍ଦି କାନ୍ଦି ଆସି ସବାରିରେ ବସିଲା । ସବାରିକୁ ଶାଶୂଘରକୁ ନିଆଗଲା । ବର ଘରର ଅଗଣାରେ ସବାରି ରଖାହେଲା ।

ଏଥର ବୋହୂକୁ ଓହ୍ଲାଇବାର କଥା । ଯାହା ସବୁ ବିଧି ଦରକାର, ସେସବୁ ପାଳନ କରାଗଲା । ସ୍ତ୍ରୀ ଲୋକମାନେ ବୋହୂକୁ ପାଛୋଟି ନେବାକୁ ସବାରି ପାଖକୁ ଆସିଲେ । ବୋହୂକୁ ଦେଖି ସେମାନଙ୍କ ହାତରୁ ବନ୍ଦାପନା ଥାଳି ଖସି ପଡ଼ିଲା । ସେମାନେ ଚିତ୍କାର କଲେ । ଘରେ ବାହାରେ ଯେତେ ଲୋକ ଥିଲେ, ସେମାନେ ସେଠାକୁ ଧାଇଁଲେ । ସମସ୍ତେ ଦେଖିଲେ—ବୋହୂ ଦେହରେ ପ୍ରାଣ ନାହିଁ ।

ବିବାହର ଆନନ୍ଦ ଉତ୍ସବ ଏଇଠି ସରିଗଲା । ଶାଶୂଘର ଲୋକେ ଝିଅର ସ୍ମୃତିପାଇଁ ମନ୍ଦିରଟିଏ ତୋଳାଇଲେ । ତାହା ପୁଣି ଭାଇର ସମାଧି ପାଖରେ ।

ଏବେ ବି ସମାଧି ପାଖରେ ମନ୍ଦିରଟି ଅଛି । ପ୍ରତିବର୍ଷ ଏଠାରେ ମେଳାଟିଏ ହୁଏ । ବହୁତ ଲୋକ ଆସନ୍ତି । ସେମାନେ ଭାଇର ସମାଧି ପାଖରେ ପୂଜା କରନ୍ତି ଓ ଭଉଣୀ ସ୍ମୃତି ମନ୍ଦିରରେ ଫୁଲ ଓ ଧୂପ ଦିଅନ୍ତି ।



# କାଗଜ ଫୁଲ

ଏକଦା ଜଣେ ରାଜା ଥିଲେ । ତାଙ୍କର ସାତ ରାଣୀ । ସମସ୍ତେ ନିଃସନ୍ତାନ । ସେଥିପାଇଁ ରାଜାଙ୍କର ଘୋର ଦୁଃଖ । ତାଙ୍କ ଅନ୍ତେ ତାଙ୍କ ରାଜ୍ୟ କିଏ ଭୋଗ କରିବ, ସେଥିପାଇଁ ତାଙ୍କର ଚିନ୍ତା ।

ପୁଅ କିପରି ହେବ, ସେଥିପାଇଁ ରାଜା ସାଧୁ ସନ୍ଥଙ୍କର ପରାମର୍ଶ ନିଅନ୍ତି । ଦାନ ଧର୍ମ କରନ୍ତି । ପୂଜା ହୋମ ଯଜ୍ଞ ଚାଲେ । ଏମିତି ବହୁଦିନ ଚାଲିଗଲା । ଶେଷକୁ ଭଗବାନ ପ୍ରସନ୍ନ ହେଲେ । ବଡ଼ ରାଣୀ ଗର୍ଭବତୀ ହେଲେ । ରାଜା ଖୁବ୍ ଖୁସି । ବଡ଼ ରାଣୀ ତାଙ୍କର ଉତ୍ତରାଧିକାରୀ ଆଣୁଥିବାରୁ ତାଙ୍କ ଉପରେ ସେ ସନ୍ତୁଷ୍ଟ । ନିଜେ ତାଙ୍କର ତତ୍ତ୍ୱ ନେଉଥିଲେ । ସୁରୁଖୁରୁରେ ପିଲାଟି ଜନ୍ମ ହେଉ, ଏଇଟା ତାଙ୍କର ଆକାଙ୍‌କ୍ଷା । କିନ୍ତୁ ଅନ୍ୟ ଛ'ରାଣୀଙ୍କର ମନର ଭାବ ଅନ୍ୟ ପ୍ରକାରର । ବଡ଼ ରାଣୀ ପ୍ରତି ସ୍ନେହ ଶ୍ରଦ୍ଧା ଦେଖି ସେମାନେ ଈର୍ଷାରେ ଜଳିଗଲେ । ବଡ଼ ରାଣୀଙ୍କୁ କିପରି ପାନେ ଦେବେ, ସେଥିପାଇଁ ତାଙ୍କର ମସୁଧା ଚାଲିଲା ।

ବଡ଼ ରାଣୀଙ୍କର କିପରି ଗର୍ଭପାତ ହେବ, ସେଇ ଚିନ୍ତାରେ ସେମାନେ ଥିଲେ । କିନ୍ତୁ ସୁବିଧା କିଛି ଜୁଟିଲା ନାହିଁ । ସେ ଦିଗରେ ସେମାନେ ନିରାଶ ହେଲେ ।

ଏଣେ ବଡ଼ ରାଣୀଙ୍କର ପ୍ରସବ ସମୟ ପାଖେଇ ଆସିଲା । ସେଥିପାଇଁ ରାଜା ଜଣେ ଧାଈକୁ ନିଯୁକ୍ତ ଦେଲେ । ଧାଈଟି ସବୁ ଗୁଣରେ ଭଲ । କିନ୍ତୁ ଭାରି ଲୋଭୀ । ଏକଥା ଛ' ରାଣୀଙ୍କର କାନକୁ ଗଲା । ଛ' ରାଣୀମାନେ ଏହାର ସୁବିଧା ନେଲେ । ତାକୁ ଅଜସ୍ର ପଇସା ଦେଇ ହାତ କରି ନେଲେ । ଏବେ ଧାଈଟି ଛ' ରାଣୀଙ୍କର ବଶମ୍ବଦ ।

ଦିନେ ଛ' ରାଣୀମାନେ ଧାଈକୁ ଡାକି କହିଲେ—"ତୁ ଗୋଟିଏ ପଥର ଓ ଗୋଟିଏ ଘୋରଣା ପାଖରେ ରଖିଥିବୁ । ବଡ଼ ରାଣୀଙ୍କର ପୁଅ ହେଲେ ତାକୁ ନେଇଯିବୁ । ସେ ଜାଗାରେ ପଥରଟିକୁ ରଖିଦେବୁ । ଝିଅଟିଏ ହେଲେ ତାକୁ ନେଇଯାଇ ତା' ଜାଗାରେ ଘୋରଣାଟିଏ ରଖିବୁ । ବଡ଼ ରାଣୀଙ୍କୁ କହିବୁ, ତମର ଭାଗ୍ୟ ଖରାପ । ମଣିଷ ପିଲା ଜନ୍ମ ନ କରି ଏହାକୁ ଜନ୍ମ କରିଛ ।"

ଏ ପ୍ରକାର ଦୁଃସାହସିକ କାର୍ଯ୍ୟ କରିବାକୁ ଧାଈଟି ଅମଙ୍ଗ ଥିଲା । କିନ୍ତୁ ସେ ତ ଉତ୍କୋଚ ନେଇଛି । ତାର ତ ଉପାୟ ନାହିଁ । ଛ' ରାଣୀଙ୍କର ଧମକରେ ସେ ରାଜି ହେଲା ।

ସେଇଦିନୁ ଧାଈଟି ବଡ଼ ରାଣୀଙ୍କୁ ଅତି ଆପଣାର କରିନେଲା । ତାଙ୍କ ଦେହରୁ ଝାଳ ବୋହିଲେ, ନିଜ ଦେହରୁ ରକ୍ତ ଗଲା ବୋଲି ସେ ଦେଖାଇ ହେଲା । ବଡ଼ ରାଣୀ ତା' ଉପରେ ଏକଦମ ନିର୍ଭର କଲେ । ସେ ତାଙ୍କର ପୂରା ବିଶ୍ୱାସୀ । ଧାଈ ଅଛି, ରାଜାଙ୍କର ଚିନ୍ତାର କାରଣ ନାହିଁ । ଏକଥା ରାଜାଙ୍କୁ ବି ବଡ଼ ରାଣୀ କହିଲେ ।

ଧାଈଟିଏ ବିଶ୍ୱାସୀ ହୋଇଥିବାରୁ ରାଜା ବି ଖୁସି । ସେ ଆଉ ରାଣୀଙ୍କର ତତ୍ତ୍ୱ ନ ନେଇ ଧାଈ ଉପରେ ନିର୍ଭର କଲେ ।

ପ୍ରସବ ବେଦନା ଆରମ୍ଭ ହେଲା । ରାଜାଙ୍କ ଆଦେଶାନୁସାରେ ତାଙ୍କ ପାଖକୁ ଖବର ଯିବାର କଥା । କିନ୍ତୁ ଧାଈର ପ୍ରରୋଚନାରେ ରାଜାଙ୍କ ପାଖକୁ ବଡ଼ ରାଣୀ ଖବର ପଠାଇଲେ ନାହିଁ ।

ଗର୍ଭ ବେଦନା ବଢ଼ିବାରୁ ରାଣୀ ସହି ପାରିଲେ ନାହିଁ । ଚିତ୍କାର କଲେ । ଏ କଷ୍ଟରୁ ରକ୍ଷା କରିବାକୁ ତାଙ୍କର ଥିଲା ଧାଈକୁ ଅନୁନୟ ବିନୟ ଓ ଅନୁରୋଧ । ଧାଈ ଦେଖିଲା—ରାଣୀଙ୍କର ସହିବା ଶକ୍ତି ଖୁବ୍ କମ୍ । ତେଣୁ ତା'ର ଉପଦେଶ ବିନା ଆପତ୍ତିରେ ମାନି ନେବେ । ତେଣୁ ସେ କହିଲା—"ଆଖିରେ ଆଲୁଅ ପଡ଼ିଲେ

କଷ୍ଟର ମାତ୍ରା ବଢ଼ିଯାଏ । ତମର ଆପତ୍ତି ନଥିଲେ, ମୁଁ ତମ ଆଖିରେ କଳା କନା ବାନ୍ଧିଦେବି । ଯାହା କଷ୍ଟ ହେବାର କଥା ତା' ଆଉ ହେବ ନାହିଁ ।"

ରାଣୀ ତ କଷ୍ଟରୁ ରକ୍ଷା ପାଇବା ପାଇଁ ଚାହୁଁଥିଲେ । ଧାଈଟି କଥାରେ ସେ ରାଜି ହୋଇଗଲେ । ଧାଈ ଗୋଟିଏ କଳାକନା ବଡ଼ ରାଣୀଙ୍କ ଆଖିରେ ଟାଣ୍‌କଷ କରି ବାନ୍ଧିଦେଲା ।

ରାଣୀଙ୍କର ଦୁଇଟି ଯାଆଁଳା ପିଲା ହେଲେ । କିନ୍ତୁ ସେତେବେଳକୁ ରାଣୀଙ୍କର ସଂଜ୍ଞା ନଥିଲା । ଧାଈଟି ରାଣୀଙ୍କର ଜ୍ଞାନ ଫେରାଇବାକୁ ଚେଷ୍ଟା କଲା ନାହିଁ । ବରଂ ପିଲା ଦୁଇଟିକୁ ସେଠାରୁ ନେଇଗଲା । ଗୋଟିଏ କମ୍ବଳରେ ଗୁଡ଼ାଇ ଦେଇ ପାଖ ନଈ କୂଳରେ ରଖି ଆସିଲା । ଅନ୍ୟ ରାଣୀମାନେ ଦେଇଥିବା ପଥର ଓ ଘୋରଣା ରାଣୀଙ୍କ ପାଖରେ ରଖିଦେଲା । ଆଖିରେ ବାନ୍ଧିଥିବା କଳା କନା ଖୋଲିଦେଲା । ତାପରେ ରାଣୀଙ୍କର ଚେତା ଆଣିବାକୁ ଚେଷ୍ଟା କଲା ।

ରାଣୀଙ୍କର ଚେତା ଆସିଲା । ପିଲାଙ୍କୁ ସେ ଦେଖିବାକୁ ଚାହିଁଲେ । ଧାଈଟି କହିଲା—"ଆପଣଙ୍କର ଭାଗ୍ୟ ଖରାପ । ଆପଣ ମଣିଷ ପିଲା ଜନ୍ମ କଲେ ନାହିଁ । ଗୋଟିଏ ଘୋରଣା ଓ ପଥର ଜନ୍ମ କରିଛନ୍ତି ।" ରାଣୀଙ୍କର ଏ କଥାରେ ବିଶ୍ୱାସ ହେଲା ନାହିଁ । କିନ୍ତୁ ସେ ଉପାୟହୀନା । କାନ୍ଦିବା ଛଡ଼ା ଉପାୟ ତାଙ୍କର ନଥିଲା । ରାଜା ଆସିଲେ । ସବୁକଥା ଶୁଣିଲେ ।

ଧାଈକୁ ସେ ବିଶ୍ୱାସ କଲେ । ସାଥେ ସାଥେ ବଡ଼ ରାଣୀଙ୍କୁ ଏକ ନିକାଞ୍ଚନ ଜାଗାରେ ଘରଟିଏ କରି ରଖିବାକୁ ଆଦେଶ ଦେଲେ । ସେଠି ତାଙ୍କ ଖାଇବା ପାଇଁ ଶୁଖିଲା ରୁଟିର ବ୍ୟବସ୍ଥା କରି ଦେଲେ । ରାଜାଙ୍କର ଆଦେଶ ପାଳନ ହେଲା ।

ଏଣେ ପିଲା ଦୁଇଟି କମ୍ବଳରେ ଗୁଡ଼ାଇ ହୋଇ ପଡ଼ିଥାନ୍ତି । ସେଇବାଟେ ଜଣେ ସାଧୁ ଯାଉଥିଲେ । ତାଙ୍କ ନଜର ପିଲା ଦୁଇଟିଙ୍କ ଉପରେ ପଡ଼ିଲା । ତାଙ୍କର ଦୟା ହେଲା । ପିଲା ଦୁଇଟିଙ୍କୁ ସେ ତାଙ୍କ ଆଶ୍ରମକୁ ନେଇଗଲେ । ସେଇଠି ତାଙ୍କୁ ପାଳିଲେ । ଆସ୍ତେ ଆସ୍ତେ ପିଲା ଦୁଇଟି ବଡ଼ ହେବାକୁ ଲାଗିଲେ ।

ସାଧୁ ତୀର୍ଥକୁ ବାହାରିଲେ । ସେତେବେଳେ ରେଳ ବା ମଟର ନଥିଲା । ଲୋକେ ତ ତୀର୍ଥକୁ ଚାଲି ଚାଲି ଯାଉଥିଲେ । ବାଟରେ ଚୋର ଡକାଏତ ବହୁତ ଥିଲେ । ତା' ଛଡ଼ା ରୋଗରେ ପଡ଼ିଲେ ଚିକିତ୍ସା ପାଇବାର ସୁବିଧା ବା ସୁଯୋଗ ନ ଥିଲା । ତେଣୁ ଯେ ତୀର୍ଥକୁ ଯାଏ, ତାର ଫେରିବାର ଆଶା ନଥାଏ । ସାଧୁ ତୀର୍ଥକୁ ଗଲାବେଳେ ପିଲା ଦୁଇଟିଙ୍କୁ ଡାକି କହିଲେ—"ମୁଁ ତୀର୍ଥକୁ ଯାଉଛି । ମୋର ଫେରିବାର ଆଶା ଅତି କମ୍ । ତୁମେ ଏଇ ଝୁଲି ମୁଣିକୁ ରଖ । ସବୁଦିନ ପୂଜା କରିବ । ଅସୁବିଧା ହେଲେ ଏ ମୁଣିକୁ କହିବ । ତମର ଅସୁବିଧା ସବୁ ଆପେ ଆପେ ଚାଲିଯିବ ।"

ସାଧୁ ଚାଲିଗଲେ । ପିଲା ଦି'ଟା ଆଶ୍ରମରେ ରହିଲେ । ପ୍ରତିଦିନ ଝୁଲିମୁଣିକୁ ପୂଜା କରନ୍ତି । ଭାଇଟି ଭିକ୍ଷା ପାଇଁ ଯାଏ । ଯାହା ଆଣେ ଭାଇ, ଭଉଣୀ ଖାଇ ରହିଥାନ୍ତି ।

ଜଙ୍ଗଲରେ ରହିବାକୁ ତାଙ୍କୁ ଆଉ ଭଲ ଲାଗିଲା ନାହିଁ । ଆଶ୍ରମ ଛାଡ଼ି ସେମାନେ ଏଇ ଦେଶର ରାଜଧାନୀକୁ ଚାଲି ଆସିଲେ । ଗୋଟିଏ ଘର ନେଇ ସେଠାରେ ରହିଲେ ।

ସେମାନଙ୍କର ଅଭାବ କିଛି ନ ଥାଏ । ଯାହା ଦରକାର ପଡ଼େ ଝୁଲିମୁଣିକୁ ସେମାନେ କହନ୍ତି । ଅବିଳମ୍ବେ ସେସବୁ ମିଳି-ଯାଏ । ଫଳରେ ଆନନ୍ଦରେ ତାଙ୍କର ଦିନ କଟେ । କିନ୍ତୁ ଯେଉଁ

ଘରେ ସେମାନେ ରହୁଥିଲେ, ସେ ଘର ତାଙ୍କ ମନମୁତାବକ ନଥିଲା । ଜାଗାଟିଏ ପାଇଲେ, ଘରଟିଏ କରିବାକୁ ତାଙ୍କର ଇଚ୍ଛା । ସେଥିପାଇଁ ଭାଇଟି ଦିନେ ଦରବାରକୁ ଗଲା ।

ଭାଇଟିର ଚେହେରା ତ ଅପୂର୍ବ । ଯେ ଦେଖେ ସେ ମୁଗ୍ଧ ହୋଇଯାଏ । ରାଜ ଦରବାରରେ ତାର ଉପସ୍ଥିତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲା । ରାଜା ପଚାରିଲେ—"ତୁମେ କିଏ ? କୁଆଡ଼େ ଆସିଛ ?"

ପୁଅଟି କହିଲା—"ମହାରାଜ, ମୁଁ ଜଣେ ସାଧୁ । ତୀର୍ଥ ଭ୍ରମଣ କରିବା ମୋର ଲକ୍ଷ୍ୟ । ସେଇ ଉଦ୍ଦେଶ୍ୟରେ ମୁଁ ଆପଣଙ୍କ ରାଜ୍ୟକୁ ଆସିଛି । ଆଦେଶ ଦେଲେ, ଗୋଟିଏ ଜାଗାରେ ଡେରା ପକାଇ କିଛିଦିନ ରହିବି । ତା'ପରେ ଚାଲିଯିବି ।

ରାଜା ପଚାରିଲେ—"ତୁମେ କ'ଣ ଏକାକୀ ?"

ପିଲାଟି କହିଲା—"ସାଧୁ ସନ୍ଥ ଏକାକୀ ଯାଆନ୍ତି ନାହିଁ । ମୁଁ କିପରି ଏହାର ବ୍ୟତିକ୍ରମ କରିବି ?"

ରାଜା କହିଲେ—"ତୁମେ ଆଉ ଦିନେ ଆସ । ମୁଁ ତମ ପାଇଁ ବ୍ୟବସ୍ଥା କରିବି ।"

ଯୁବକଟି ଉଆସ ବାଟେ ଦେଇ ଗଲାବେଳେ ରାଣୀମାନେ ତାକୁ ଦେଖିଲେ । ତାର ଚେହେରା ରାଜାଙ୍କ ଚେହେରା ସହ ସମ୍ପୂର୍ଣ୍ଣ ମିଶି ଯାଉଛି, ଏକଥା ସେମାନେ ଅନୁଭବ କଲେ । ସେ ଯେ ରାଜାଙ୍କର ପୁଅ, ଏଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । ସେମାନେ ପୁଣି ଷଡ଼ଯନ୍ତ୍ରର ଆଲୋଚନା କଲେ । ପିଲାକୁ ରାଜାଙ୍କ ହାତରେ ନ ମାରିଲେ ରକ୍ଷା ଆଉ ନାହିଁ । ଏହାହିଁ ସେମାନଙ୍କର ସମ୍ମିଳିତ ନିଷ୍ପତ୍ତି ହେଲା ।

ଛ' ରାଣୀ ରାଜାଙ୍କ ପାଖକୁ ଗଲେ । ରାଜାଙ୍କୁ କହିଲେ—ମଣିମା, ଯେଉଁ ଯୁବ ସନ୍ନ୍ୟାସୀ ଆସିଛି, ତା' ରୂପରୁ ସେ ଯେ

ଜଣେ ସନ୍ନ୍ୟାସୀ ଜମା ଜଣାପଡ଼ୁ ନାହାଁନ୍ତି । ତେଣୁ ସେ ସନ୍ନ୍ୟାସୀ କି ନୁହଁ ଆଗ ପରୀକ୍ଷା କରନ୍ତୁ । ସନ୍ନ୍ୟାସୀ ହୋଇଥିଲେ ତ ଭଲ । ନହେଲେ ତାକୁ ଏ ରାଜ୍ୟରେ ସ୍ଥାନ ଦେବା ବିପଦଜନକ । ତା'ଛଡ଼ା ଆପଣଙ୍କୁ ସନ୍ନ୍ୟାସୀ ବୋଲି ସେ ମିଥ୍ୟା କହୁଛି । ତେଣୁ ତାକୁ ଶୂଳୀ ଦେବା ଉଚିତ ।"

ରାଜାଙ୍କ ମନକୁ କଥାଟା ଆସିଲା । ତାକୁ କପରି ପରୀକ୍ଷା କରିବେ, ସେଇ ଚିନ୍ତାରେ ସେ ପଡ଼ିଲେ ।

ରାଣୀମାନେ କହିଲେ—"ଏଇ ଗୋଟେ କଥା ! ସେ ସନ୍ନ୍ୟାସୀ ତ ଜାଗା ଖୋଜୁଛି । ନଅର ବାହାରେ ଗୋଟେ ବିରାଟ ଟାଙ୍ଗରା ଭୂମି ଅଛି । ସେଠି ଦୁବ ଜଆଁନେ ନାହିଁ । ତାକୁ ଆଦେଶ ଦିଅନ୍ତୁ ଯେ ସେ ଏକ ଘନ ଜନବସତି ସେଠି କରିଦେଉ । ନହେଲେ ଶୂଳୀ ପାଇବ ।"

ପରଦିନ ଯୁବକଟି ପୁଣି ରାଜ ଦରବାରକୁ ଆସିଲା । ରାଜା ତାକୁ ଦେଖି କହିଲେ—"ସହର ଉପକଣ୍ଠରେ ଯେଉଁ ଟାଙ୍ଗରା ଭୂଇଁ ପଡ଼ିଛି, ସେଇଟା ତମକୁ ଦିଆଗଲା । ତୁମେ କାଲି ସୁଦ୍ଧା ସେଠାରେ ଗୋଟିଏ ସୁନ୍ଦର ଜନବସତି କରିଦେବ । ନହେଲେ ଶୂଳୀ ପାଇବ ।"

ଏକଥା ଶୁଣି ଯୁବକଟି ରାଜାଙ୍କଠାରୁ ବିଦାୟ ନେଲା । ଘରକୁ ଯାଇ ସବୁକଥା ସେ ଭଉଣୀକୁ କହିଲା । ଭାଇ, ଭଉଣୀ ଝୁଲମୁଣି ପାଖରେ ପ୍ରାର୍ଥନା କଲେ । ସତକୁସତ ନଗୁଟିଆ ଜାଗାରେ ଗୋଟିଏ ସୁନ୍ଦର ଜନବସତି ହୋଇଗଲା ।

ରାଜା ଏକଥା ଦେଖି ଆଶ୍ଚର୍ଯ୍ୟ । ଯୁବକଟିର ଯେ ଅଦ୍ଭୁତ ଶକ୍ତି ଅଛି, ସେକଥା ସେ ଜାଣିପାରିଲେ । ପରୀକ୍ଷା କରି ଯୁବକଟିକୁ ହଇରାଣ କରିଥିବାରୁ ସେ କ୍ଷମା ମାଗିଲେ ।

କେଉଁ କଥା କେଉଁଠି କହିଲେ ଲୁଚେ ନାହିଁ । ଯୁବକଟିର ଅଦ୍ଭୁତ ଶକ୍ତି କଥା ସବୁଆଡ଼େ ପ୍ରଚାର ହୋଇଗଲା । ରାଜା ସେ ଯୁବକଟି ଉପରେ ସନ୍ତୁଷ୍ଟ, ଏହା ଦେଖି ରାଣୀମାନେ ଖୁବ୍ ରାଗି ଗଲେ । କିପରି ତାକୁ ବିପଦରେ ପକାଇବେ ସେଇଠା ସେମାନଙ୍କର ଚିନ୍ତା । ସେଥିପାଇଁ ସେମାନଙ୍କ ମଧ୍ୟରେ ମନ୍ତ୍ରଣା ଚାଲିଲା ।

ରାଜାଙ୍କର ତ ପୁଅ ନାହିଁ । ସେଥିପାଇଁ ରାଜା ସବୁବେଳେ ଦୁଃଖିତ । ଏକଥା ରାଣୀମାନେ ଜାଣନ୍ତି । ପୁତ୍ରଲାଭ ପାଇଁ ଯଜ୍ଞଟିଏ କରିବାକୁ ସେମାନେ ରାଜାଙ୍କୁ ଫୁସୁଲାଇଲେ । ରାଜା ରାଜି ହେଲେ ।

କେତେ ଆଡୁ କେତେ ସାଧୁସନ୍ଥ ଆସିଲେ । ପୁଅଟିକୁ ମଧ୍ୟ ସେ ଯଜ୍ଞକୁ ନିମନ୍ତ୍ରଣ ଥିଲା । ଯଜ୍ଞ ସରିବାପରେ ରାଜା ସବୁ ସାଧୁ ସନ୍ଥଙ୍କୁ ପ୍ରାର୍ଥନା କଲେ—"ମୁଁ ଅପୁତ୍ରିକ । ମୋର ପୁତ୍ରଟିଏ ହେଉ । ଏଥିପାଇଁ ଆପଣଙ୍କର ଆଶୀର୍ବାଦ ମିଳୁ ।"

ସେମାନେ ବହୁତ ଆଲୋଚନା କଲେ । ଶେଷରେ କହିଲେ— "ଆପଣଙ୍କୁ କଳା ଫୁଲର ତୋଡ଼ା ଯଦି କିଏ ଆଣିଦେବ, ଆପଣଙ୍କର ପୁଅଟିଏ ହେବ ।"

ରାଜା ସବୁଆଡ଼େ ଆଖି ବୁଲାଇଲେ । କଳା ଫୁଲ ତୋଡ଼ା ଆଣିଦେବା ଭଳି ଲୋକଟିଏ ତାଙ୍କ ନଜରରେ ପଡ଼ିଲା ନାହିଁ ।

ରାଣୀମାନେ ରାଜାଙ୍କୁ କହିଲେ—"ଏଇ ଗୋଟାଏ କଥା ! ତାକୁ ପୁଣି ଆପଣ ପାରୁନାହାନ୍ତି ? ଯୁବକ ସନ୍ନ୍ୟାସୀକୁ ଡାକି କୁହନ୍ତୁ । ସେ କଳା ଫୁଲ ତୋଡ଼ା ଆଣିଦେଉ । ନହେଲେ ତାର ମୁଣ୍ଡ କଟା ହେବ ।"

ରାଣୀମାନେ ଯାହା କହିଲେ, ରାଜା ସେଇଆ କଲେ । ପୁଅଟି କିନ୍ତୁ ଅନ୍ୟ ପ୍ରକାରର । ରାଜାଙ୍କର ପୁଅ ନାହିଁ । ସେଥିପାଇଁ ତାର ମନରେ ରାଜାଙ୍କ ପ୍ରତି ଦରଦ ବହୁତ । ସେଥିପାଇଁ ରାଜାଙ୍କ କଥାରେ

ରାଜା ହେଲା । କଳା ଫୁଲ ପାଇଁ ତ ଦୂର ବିଦେଶକୁ ସେ ଯିବ । ସେଥିପାଇଁ ତା'ର ବହୁତ ଅର୍ଥ ଦରକାର । ସେକଥା ରାଜା ହୃଦୟଙ୍ଗମ କଲେ । ପୁଅଟି କିଛି ପଇସା ମାଗିବା ପୂର୍ବରୁ ତାକୁ ସେ ବାଟଖର୍ଚ୍ଚ ପାଇଁ ବହୁତ ପଇସା ଦେଲେ ।

ପୁଅଟି ଭଉଣୀ ପାଖକୁ ଆସିଲା । ସବୁକଥା କହିଲା । ଭାଇ, ଭଉଣୀ ଝୁଲମୁଣ୍ଡିକୁ ପୂଜା କଲେ । ତାପରେ କଳା ଫୁଲ ପାଇଁ ପ୍ରାର୍ଥନା କଲେ । ପୂଜା ସରିବା ପରେ ପରେ ଗୋଟିଏ କୁହୁକଘୋଡ଼ା ସେଠି ଆସି ପହଞ୍ଚିଗଲା । ପୁଅଟି ଘରୁ ବାହାରି କୁହୁକ ଘୋଡ଼ା ଉପରେ ବସିଲା । ତାକୁ କହିଲା—"କୁହୁକ ଘୋଡ଼ା ଉଡ଼ିଯା । କଳା ଫୁଲଥିବା ରାଜ୍ୟରେ ମୋତେ ପହଞ୍ଚାଇ ଦେ ।"

ସତକୁ ସତ କୁହୁକ ଘୋଡ଼ାଟି ପୁଅକୁ ନେଇ ଗୋଟିଏ ରାଜ୍ୟରେ ପହଞ୍ଚିଗଲା । ସେଠି ସବୁ ଫୁଲ କଳା । ସେଠାକାର ରାଜା ଜଣେ ଅସୁର । ପୁଅଟି ଘୋଡ଼ାରୁ ଓହ୍ଲାଉ ଓହ୍ଲାଉ ସେ ଚିତ୍କାର କଲା—"ମଣିଷ ଗନ୍ଧ, ମଣିଷ ଗନ୍ଧ ।" ତା'ପରେ ପୁଅ ଆଡ଼କୁ ସେ ଧାଇଁ ଆସିଲା । ପୁଅଟି ତ ଭାରି ସାହସୀ । ସେ ସେଇଠି ଠିଆ ହୋଇ ଗୁରୁଙ୍କୁ ସ୍ମରଣ କଲା । ଅସୁର ଆଉ ଆଗେଇ ଆସି ପାରିଲା ନାହିଁ, ବରଂ ଭୟରେ ସେଠୁ ପଳାଇଗଲା । ପୁଅ କଳା ଫୁଲ ମନଇଚ୍ଛା ତୋଳିଲା । ସେତକ ଧରି ପୁଣି କୁହୁକ ଘୋଡ଼ାରେ ଫେରି ଆସିଲା । ଭାଇକୁ ଦେଖି ଭଉଣୀ ଭାରି ଖୁସି । ଫୁଲତକ ନେଇ ଭଉଣୀ ଗୋଟିଏ ସୁନ୍ଦର ତୋଡ଼ାଟିଏ କଲା । ଯିଏ ସେ ଫୁଲ ତୋଡ଼ା ଦେଖିବ ଖୁସି ହୋଇଯିବ । ତାକୁ ଧରି ଭାଇଟି ରାଜାଙ୍କ ପାଖକୁ ଗଲା । ଫୁଲ ତୋଡ଼ା ଦେଖି ରାଜା ଭାରି ଖୁସି । ପିଲାଟି କଳା ଫୁଲ ଧରି ଫେରି ଆସିବା ଖବର ରାଜ୍ୟସାରା ବ୍ୟାପିଗଲା । ରାଣୀମାନେ ଜାଣିଲେ । ତାଙ୍କର ଉଦ୍ୟମ ଯେ ପଣ୍ଡ

ହୋଇଗଲା, ତାହାହିଁ ସେମାନେ ଅନୁଭବ କଲେ । ଆପେ ଆପେ ହତାଶାର ଦୀର୍ଘ ନିଃଶ୍ୱାସ ତାଙ୍କଠାରୁ ବାହାର ଆସିଲା । ପୁଣି ତାଙ୍କ ଭିତରେ ମନ୍ତ୍ରଣା ଚାଲିଲା ।

ରାଜା ଜ୍ୟୋତିଷମାନଙ୍କୁ ଡକାଇଲେ । କେଉଁ ରାଣୀର ପିଲା ହେବ, ତା ଜାଣିବାକୁ ଚାହିଁଲେ । ସେମାନେ କହିଲେ—"ଏଇ ରାଣୀମାନଙ୍କ ମଧ୍ୟରୁ କାହାର ପିଲା ହେବ ନାହିଁ । ଆପଣ 'ଜଳ ଦେବୀ'ଙ୍କୁ ବିବାହ କରନ୍ତୁ । ତାଙ୍କର ପୁଅ ହେବ ।"

ଏ ଖବର ପାଇ ରାଣୀମାନଙ୍କର ମନ ମରିଗଲା । କିନ୍ତୁ ସେମାନେ ସ୍ଥିର କଲେ—ଏଇଟା ହିଁ ଗୋଟେ ସୁଯୋଗ । ଏଇଥର ପିଲାଟିର ସେମାନେ ଜୀବନ ନେବେ । ସେଥିପାଇଁ ରାଜାଙ୍କୁ କହିଲେ —"ପୁଅଟିକୁ ପଠାଅ । ସେ ଜଳ ଦେବୀଙ୍କୁ ଆଣୁ । ନଇଲେ ତାର ମୁଣ୍ଡକାଟ ହେବ ବୋଲି ଆଦେଶ ଦିଅନ୍ତୁ ।"

ପୁଅଟି ପ୍ରତି ରାଜାଙ୍କର ଆନ୍ତରିକ ଶ୍ରଦ୍ଧା ଥିଲା । ତେଣୁ ସେ ତାକୁ ଆଉ ହଇରାଣ କରିବାକୁ ଚାହୁଁ ନଥିଲେ । ସେଥିପାଇଁ ସେ ରାଣୀମାନଙ୍କ କଥାରେ ପ୍ରଥମେ ପ୍ରଥମେ ରାଜି ହେଲେ ନାହିଁ ।

ରାଣୀମାନେ ବାଧ କରିବାରୁ ଶେଷକୁ ସେ ରାଜି ହେଲେ । ପୁଅକୁ ଡାକି 'ଜଳ ଦେବୀ'ଙ୍କୁ ଆଣିବାକୁ ଆଦେଶ ଦେଲେ । ପୁଅଟି ତାଙ୍କ କଥାରେ ବାହାରକୁ ଗଲା ନାହିଁ । ଭଉଣୀ ପାଖକୁ ଆସି ସବୁକଥା କହିଲା ।

ଭାଇ ଓ ଭଉଣୀ ଦୁଇଜଣ ପୁଣି ଝୁଲାମୁଣିକୁ ପୂଜା କଲେ । 'ଜଳ ଦେବୀ'ଙ୍କୁ ଆଣିବା ପାଇଁ ପ୍ରାର୍ଥନା କଲେ । କୁହୁକ ଘୋଡ଼ା ଆସିଗଲା । ପୁଅଟି ଘୋଡ଼ା ଉପରେ ବସି କହିଲା—

"ହେ ମୋର ପ୍ରିୟ କୁହୁକ ଘୋଡ଼ା—ଜଳ ଦେବୀ ଯେଉଁ ରାଜ୍ୟରେ ଅଛି, ମୋତେ ସେଠାକୁ ନେଇଯା ।"

ମୁହୂର୍ତ୍ତକ ମଧ୍ୟରେ ଘୋଡ଼ା ଆକାଶକୁ ଉଡ଼ିଗଲା । ସେ ପୁଅକୁ ନେଇ ଏକ ଅଜଣା ରାଇଜରେ ପହଞ୍ଚାଇଦେଲା । ଏଇଟା ଗୋଟିଏ ସୁନ୍ଦର ଉପତ୍ୟକା । ଚାରିଆଡ଼େ ପାଇନ୍ ଗଛର ଜଙ୍ଗଲ । ମଝିରେ ଗୋଟିଏ ହ୍ରଦ । ସେ ଜାଗାଟି ଚମତ୍କାର୍ଷକ । ମନୋହର । ପିଲାଟି ଏ ସବୁ ଦେଖି ଆତ୍ମହରା ହୋଇଗଲା । ଏତିକବେଳେ ଗୋଟିଏ ଶବ୍ଦ ହେଲା । ସେ ଶବ୍ଦ ଆସ୍ତେ ଆସ୍ତେ ନିକଟରୁ ନିକଟତର ହେଲା । ଗୃହୁଁ ଗୃହୁଁ ତା'ର ଘୋଡ଼ାଟି ପଥର ପାଲଟିଗଲା । ସେ ଶବ୍ଦ ଆହୁରି ପାଖକୁ ଲାଗି ଆସିଲା । ତା'ର ଗୋଡ଼ ଆଡ଼ୁ ପଥର ପାଲଟି ଯିବାର ସେ ଅନୁଭବ କଲା । ସେ ଦେଖିଲା, ଆଉ ଟିକଏ ଗଲେ, ସେ ପଥର ହୋଇଯିବ । ତା'ର ଆଉ ଉପାୟ ନାହିଁ । ମନଧ୍ୟାନ ଦେଇ ବାରମ୍ବାର ତା'ର ଗୁରୁଙ୍କୁ ଡାକିଲା । କିଛି ସମୟ ସେ ସେଇ ଅବସ୍ଥାରେ ରହିଗଲା । କିନ୍ତୁ ସେ ଗୁରୁଙ୍କୁ ଡାକିବା ବନ୍ଦ କଲା ନାହିଁ । ତା'ପରେ ଆସ୍ତେ ଆସ୍ତେ ତା'ର ରୂପ ବଦଳିଗଲା । ପଥରରୁ ତାକୁ ମୁକ୍ତି ମିଳିଲା । ତା'ପରେ ଘୋଡ଼ା ବି ତା'ର ଜୀବନ ପାଇଲା । ଶବ୍ଦଟି ଆସ୍ତେ ଆସ୍ତେ କମିଗଲା । ସେ ଦେଖିଲା—ଗୋଟିଏ ଶବ ହଠାତ୍ ହ୍ରଦ ଭିତରେ ପଡ଼ିଗଲା । ହ୍ରଦ ଭିତରୁ ଗୋଟିଏ ସୁନ୍ଦରୀ ସ୍ତ୍ରୀ ଲୋକ ବାହାରି ଆସିଲା । ସେ ପିଲାଟିକୁ ତା' ପାଖକୁ ଯିବାକୁ ଅନୁରୋଧ କଲା । ପିଲାଟି ପାଖକୁ ଯାଇ ଦେଖିଲା—ସେ ଏକ ମତ୍ସ୍ୟନାରୀ । ଉପର ଅଂଶ ମଣିଷ ଭଳି । ତଳ ଅଂଶଟି ମାଛ ପରି । ସେ କହିଲା—"ଏ ଯେଉଁ ଶବ ପଡ଼ିଛି, ତାହା ଗୋଟିଏ ନିଷ୍ଠୁର ଅସୁରର ଶବ । ସେ ମୋତେ ବହୁବର୍ଷ ଧରି ବନ୍ଦୀକରି ରଖିଥିଲା ତା'ର ମନ୍ତ୍ର ବଳରେ । ଯେ ଏ ଅଞ୍ଚଳକୁ ଆସେ, ତାକୁ ସେ ପଥର କରିଦିଏ ।" ସେଠାରେ ପଡ଼ିଥିବା ପଥରମାନଙ୍କ ଆଡ଼କୁ ହାତ ଦେଖାଇ ସେ କହିଲା—"ଏମାନେ ବି

ହେଲେ ମଣିଷ ଥିଲେ । ଅସୁରର ମନ୍ତ୍ର ବଳରେ ସେମାନେ ପଥର ପାଲଟି ଯାଇଛନ୍ତି ।”

ପିଲାଟି ମତ୍ସ୍ୟନାଗୀ କଥା ବିଶ୍ୱାସ କଲା ନାହିଁ । ମତ୍ସ୍ୟନାଗୀ ତା’ର କଥା ପ୍ରମାଣ କରିବାକୁ ହ୍ରଦର ପବିତ୍ର ପାଣି ନେଲା । ସବୁ ପଥର ଉପରେ ଛିଞ୍ଚିଦେଲା । ସେ ସବୁ ମଣିଷ ହୋଇଗଲେ । ତା’ ଭିତରୁ ଅନେକ ରାଜା ଘରର ପିଲା । ପରସ୍ପର ପରସ୍ପରକୁ ଦେଖି ମହା ଆନନ୍ଦ । ସେମାନେ ପିଲାଟିକୁ ଧନ୍ୟବାଦ ଜଣାଇଲେ । ପିଲାଟି ମତ୍ସ୍ୟନାଗୀକୁ ଧରି ରାଜାଙ୍କ ପାଖକୁ ଆସିଲା । ତାଙ୍କୁ ଦେଖି ରାଜା ଆଶ୍ଚର୍ଯ୍ୟ । କିନ୍ତୁ ରାଣୀମାନଙ୍କର ଈର୍ଷା ଦ୍ୱିଗୁଣିତ ହେଲା ।

ମତ୍ସ୍ୟନାଗୀଟି ରାଜାଙ୍କୁ କହିଲା—“ଆପଣଙ୍କ ମନସ୍କାମନା ପୂର୍ଣ୍ଣ ପାଇଁ ଯଜ୍ଞଟିଏ ଦରକାର । ସେ ଯଜ୍ଞ ମୋ କଥିତ ଅନୁସାରେ ହେବ ।” ରାଜାତ ପୁଅପାଇଁ ପାଗଳ । ମତ୍ସ୍ୟନାଗୀ ଯେପରି କହିଲା, ସେପରି ଯଜ୍ଞଟିଏ ପାଇଁ ରାଜା ଆୟୋଜନ କଲେ ।

ଯଜ୍ଞ ଆରମ୍ଭ ହେବା ପୂର୍ବରୁ ଯଜ୍ଞ ଜାଗାରେ ଆଖ ପାଖ ରାଜ୍ୟର ସବୁ ପଣ୍ଡିତ, ଜ୍ଞାନୀ ଓ ଧାର୍ମିକ ଲୋକ, ସାଧାରଣ ଲୋକ ଓ ପଶୁ ପକ୍ଷୀମାନେ ବି ଆସି ସେମାନଙ୍କ ପାଇଁ ଥିବା ନିର୍ଦ୍ଦିଷ୍ଟ ସ୍ଥାନ ଗ୍ରହଣ କଲେ । ମତ୍ସ୍ୟନାଗୀ ଆସି ସେ ସମସ୍ତଙ୍କୁ ଦେଖିଲା । ରାଜା କହିଲେ—“ସମସ୍ତେ ଆସିଲେ । ଯଜ୍ଞ ଆରମ୍ଭ ହେଉ । ମତ୍ସ୍ୟନାଗୀ କହିଲା— “ଆଉ ଦୁଇଜଣ ଆସି ନାହାନ୍ତି । ତେଣୁ ଯଜ୍ଞ ଆରମ୍ଭ ହୋଇପାରିବ ନାହିଁ । ସେମାନେ କାହିଁକି ନ ଆସିଲେ, ସେଇଟା ଦେଖାଯାଉ ।”

ରାଜା ପଚାରିଲେ—“ଯେଉଁ ଦୁଇ ଜଣ ନ ଆସିଛନ୍ତି, ସେମାନେ କିଏ କିଏ ଜାଣିଲେ, ମୁଁ ଡକାଇ ଆଣିବାର ବ୍ୟବସ୍ଥା କରିବ ।”

ସେ କହିଲା—"ପ୍ରଥମ ଜଣକ ଆପଣଙ୍କର ବଡ଼ ରାଣୀ । ସେ ଏକ ନିକାଞ୍ଚନ ଜାଗାରେ ବନ୍ଦୀ ହୋଇଅଛନ୍ତି । ଦ୍ୱିତୀୟଟି ତାଙ୍କର କାଗଜ ହଂସ—ଯାହାକୁ ସେ ତାଙ୍କ ପିଲାଙ୍କ ସହିତ ଖେଳିବାକୁ ଯତ୍ନରେ ରଖିଥିଲେ ।"

ରାଜା ସେମାନଙ୍କୁ ଯଜ୍ଞ ସ୍ଥାନକୁ ଆଣିବାକୁ ଆଦେଶ ଦେଲେ । ସେମାନେ ଆସିଲେ ।

ଯଜ୍ଞକୁ ଆମନ୍ତ୍ରିତ ସମସ୍ତଙ୍କୁ ଖାଇବାକୁ ଦିଆଗଲା । ସମସ୍ତେ ଖାଇଲେ । କିନ୍ତୁ ହଂସଟି ଖାଇଲା ନାହିଁ । ରାଜା ସେତେବେଳକୁ ମହା ବ୍ୟସ୍ତ । ନିମନ୍ତ୍ରିତ ହଂସ ଯଦି ନଖାଏ, ଯଜ୍ଞ ଆରମ୍ଭ ହୋଇ ପାରିବ ନାହିଁ, ଏକଥା ରାଜା ଜାଣିଥିଲେ । ତେଣୁ ହଂସକୁ ଖାଇବାକୁ ସେ ମୁକ୍ତା ଦେଲେ । ତଥାପି ହଂସ ଖାଇଲା ନାହିଁ ।

ରାଜା ଏକଥା ଦେଖି ମହାସ୍ୟନାରୀ ପାଖକୁ ଧାଇଁଲେ । ତାକୁ କହିଲେ—"କାଗଜ ହଂସ ତ ଖାଉ ନାହିଁ ! ଯଜ୍ଞ କିପରି ଆରମ୍ଭ ହେବ ?"

ହସି ହସି ମହାସ୍ୟନାରୀ କହିଲା—"କାଗଜ ହଂସ ଯଦି ମୁକ୍ତା ଦେଲେ ବି ଖାଉ ନାହିଁ, ମଣିଷ କିପରି ପଥର ଓ ଘୋରଣା ଜନ୍ମ କରିବ ?"

ରାଜା ଏ କଥାର ତାତ୍ପର୍ଯ୍ୟ କିଛି ବୁଝିପାରିଲେ ନାହିଁ । ସେ ଏ କଥା ବୁଝାଇ ଦେବାକୁ ମହାସ୍ୟନାରୀକୁ ଅନୁରୋଧ କଲେ ।

ମହାସ୍ୟନାରୀ ସମସ୍ତ କଥା ରାଜାଙ୍କୁ ବୁଝାଇ କହିଲା—"ବଡ଼ ରାଣୀ ନିର୍ଦ୍ଦୋଷ । ସେ ପଥର ଓ ଘୋରଣା ଜନ୍ମ କରି ନାହାନ୍ତି । ଯେଉଁ ଯୁବକ ତାଙ୍କୁ ଆଣିଛୁ, ସେ ତାଙ୍କ ପୁଅ । ଯେଉଁ ଝିଅ ସେ ପୁଅ ପାଖରେ ଅଛି, ସେ ତାଙ୍କ ଝିଅ ।"

ଏକଥା ଶୁଣି ରାଜା ଅନୁତାପ କଲେ । ମହାସ୍ୟନାରୀଟିକୁ ପୁଅ

ସଙ୍ଗେ ବିବାହ କରିଦେଲେ । ରାଣୀମାନେ ତାଙ୍କ ବଡ଼ରାଣୀ ଓ ପୁଅ ଝିଅଙ୍କୁ ଅଯଥାରେ ହଇରାଣ କରିଥିବାରୁ, ସେ ସେମାନଙ୍କୁ ସେ ଦଣ୍ଡ ଦେଲେ ।



# ଆଶ୍ଚର୍ଯ୍ୟ ହ୍ରଦ

ଏହା ସେଇ ଯୁଗର କଥା, ଯେତେବେଳେ ଲୋକେ ମିଛ କହିବାକୁ ଡରୁଥିଲେ । ସବୁ ସତରେ ଚାଲୁଥିଲା ।

ସେତିକ ବେଳେ ଜଣେ ଧନୀ ବଣିକ ଥିଲା । ତା'ର ସାତ ପୁଅ । ସମସ୍ତଙ୍କର ବିବାହ ବୟସ ହୋଇଗଲା । ସେମାନଙ୍କୁ ମନଲାଖି ଝିଅ ସହିତ ବିବାହ ଦେବାକୁ ବଣିକର ଇଚ୍ଛା । ଖାଲି ଇଚ୍ଛା କଲେ ତ ହେବ ନାହିଁ, ସୁନ୍ଦର ପାତ୍ରୀ ଖୋଜି ବାହାର କରିବାକୁ ହେବ । ଏକଥା ବଣିକଟିକୁ ଅଜଣା ନଥିଲା । ସେଥିପାଇଁ ସେ ତା'ର କୁଳ ପୁରୋହିତ ଓ ସେବେଇତ ବାରିକକୁ ଡକାଇଲା । ତାଙ୍କୁ ପାଖରେ ବସାଇ କହିଲା—"ତୁମେମାନେ ମୋ ପୁଅମାନଙ୍କୁ ଜାଣିଛ । ସେମାନେ ଜ୍ଞାନୀ, ପଣ୍ଡିତ ଓ ନିଜର ଦାୟିତ୍ୱ ତୁଲାଇ ବାରେ ପାରଙ୍ଗମ । ସେମାନଙ୍କୁ ମୁଁ ବିବାହ ଦେବାକୁ ଚାହେଁ । ସେଥିପାଇଁ ପାତ୍ରୀ ଦରକାର । ତୁମେମାନେ ଯାଇ ସେମାନଙ୍କ ପାଇଁ ଉପଯୁକ୍ତ ପାତ୍ରୀ ଖୋଜ । କିନ୍ତୁ ମନେରଖ—ସ୍ତ୍ରୀ ଲୋକଙ୍କ ଯୋଗୁଁ ଘର ଭାଙ୍ଗେ । ସେମାନେ ପରଘରୁ ଆସିଥାନ୍ତି । ଯେଉଁମାନେ ସେମାନଙ୍କର ମା' ହୁଅନ୍ତି, ସେମାନେ ବି ପର ଘରର ଝିଅ । ସମ୍ପର୍କ ତ ଦୂରର କଥା, ଅଧିକାଂଶ କ୍ଷେତ୍ରରେ ସେମାନଙ୍କ ସହିତ ଦେଖା ଚାହାଁ ବି ନ ଥାଏ । ସେମାନେ ପ୍ରାୟ ସମବୟସୀ ହୋଇ ଯାଆନ୍ତି । ବିଦ୍ୟା, ବୁଦ୍ଧିରେ ତ ପ୍ରାୟ ଏକା । ଖାଲି ଜଣେ ବଡ଼

ଝିଅକୁ ବିବାହ କରିଛି ତ ଅନ୍ୟ ଜଣେ ସାନକୁ ବିବାହ କରିଛି । ଏହା କେବଳ ଚମତ୍କାର । ସାନକୁ ଯେ ବାହା ହୋଇଛି, ବଡ଼କୁ ସେ ଯେ ବାହା ନ ହୋଇ ପାରିଥାନ୍ତା, ଏପରି ପ୍ରତିବନ୍ଧକ କିଛି ନାହିଁ । ଏହା କେବଳ ଦୈବ ଯୋଗ । ସେଥିପାଇଁ ସାନ ଯା' ଦେଖାଣିଆ ମାନ୍ୟ କରେ । କିନ୍ତୁ ମନ ଭିତରେ ବଡ଼ ପ୍ରତି ମାନ୍ୟତା ନ ଥାଏ । ଦରକାର ପଡ଼ିଲେ, ଅମାନ୍ୟ କରିବାକୁ ସେ କୁଣ୍ଠାବୋଧ କରେ ନାହିଁ । ଟିକିଏ ଟିକିଏ କଥା ବି କେହି କାହାର ସହିପାରନ୍ତି ନାହିଁ । ଝଗଡ଼ା ହୁଏ । ସ୍ୱାମୀମାନେ ସ୍ତ୍ରୀ ପକ୍ଷରେ ଆସି ଠିଆ ହୁଅନ୍ତି । ସମର୍ଥନ ଦେବାରେ ହେଳା କରନ୍ତି ନାହିଁ । କେବଳ ଘର ଭାଙ୍ଗେ । ଗୋଟିଏ ଘରୁ ଯଦି ବୋହୂମାନେ ଆସନ୍ତେ, ଏ ବିବାଦ ଏଡ଼ାଇ ଦେଇ ହେବ । ସେଥିପାଇଁ ଯେଉଁ ବଣିକର ସାତୋଟି ସୁନ୍ଦରୀ ଝିଅ ଥିବେ, ତା'ର ଘରେ ପ୍ରସ୍ତାବ ପକାଇବ । ଏଥିରୁ ବ୍ୟତିକ୍ରମ କଲେ, ଉପଯୁକ୍ତ ଶାସ୍ତି ଦେବି ।"

ପୁରୋହିତ ବାରିକକୁ ସାଥିରେ ଧରି କନ୍ୟା ଖୋଜ ବାହାରି ପଡ଼ିଲେ । ଅନେକ ସହର ସେମାନେ ବୁଲିଲେ । କିନ୍ତୁ ବଣିକର ବିବାଦ ଅନୁଯାୟୀ କନ୍ୟା ଘରଟିଏ ପାଇଲେ ନାହିଁ । ସେମାନଙ୍କର ତ ବଣିକକୁ ମହା ଭୟ । ତେଣୁ କନ୍ୟା ଘର ସ୍ଥିର ନ କରି ଫେରିବାର ବାଟ ନ ଥିଲା । ସେମାନେ ଆହୁରି ଦୂରଦୂରାନ୍ତ ଯାଗାକୁ ଯିବାକୁ ସ୍ଥିର କଲେ ।

ଖରା ଦିନ । ପୁରୋହିତ ଓ ବାରିକ ଉଭୟେ ଗରିବ । ଯାନ ବାହାନର ପ୍ରଶ୍ନ କାହିଁକି ଉଠୁଛି ? ପଇଦଳ ସେମାନଙ୍କର ଏକମାତ୍ର ଆଶ୍ରା । ବାଟ ଚାଲି ଚାଲି ଦିନେ ସେମାନେ ହାଲିଆ ହୋଇପଡ଼ିଲେ । ରାସ୍ତା ପାଖରେ ଗଛଟିଏ । ତା'ର ମୂଳରେ ବିଶ୍ରାମ ନେଲେ । ସେଠାରେ ବେଶ୍ ଜନଗହଳି । ଅନେକ ବାଟୋଇ ସେଠି ବିଶ୍ରାମ

ନେଉଥାନ୍ତି । ଚୁପ୍ ହୋଇ ବସିବା ସବୁ ଲୋକଙ୍କ ପକ୍ଷରେ ସମ୍ଭବପର ନୁହେଁ । ବାର ଲୋକ ଏକାଠି ବସିଲେ ବାରଆଡୁ ବାରକଥା ପଡ଼େ । ଆମ ପୁରୋହିତ ବି ଆରମ୍ଭ କଲେ—"ମୁଁ ଜଣେ ଧନୀ ବଣିକର କୁଳ ପୁରୋହିତ । ସେ ବଣିକର ସାତ ପୁଅ । ସେମାନଙ୍କୁ ଏକାବେଳକେ ବାହା କରିବାକୁ ବଣିକ ଚାହେଁ । କିନ୍ତୁ ତା'ର ଝିଅଙ୍କ ଯେ ଖୋଜା ବୋହୂମାନେ ତା'ର କେବଳ ସୁନ୍ଦରୀ ହୋଇ ନ ଥିବେ, ସାତ ଭଉଣୀ ବି ହୋଇଥିବେ । ଆମେ ବହୁ ଜାଗା ବୁଲିଲୁ । କୌଣସି ବଣିକର ସାତ ଝିଅ ଥିବାର ଦେଖିଲୁ ନାହିଁ । ବର୍ତ୍ତମାନ ମୁଁ ଖୋଜୁଛି—ବଣିକର ଝିଅଙ୍କ ଏକ ପାଗଳାମୀ ।"

ସେଠି ଆଉ ଜଣେ ପୁରୋହିତ ବସିଥିଲେ । ସେ ଆମ ପୁରୋହିତ ପାଖକୁ ଲାଗି ଆସିଲେ । ସେ ଚୁପ୍ ଚୁପ୍ କରି କହିଲେ—"ଆମ ବଣିକର ସାତ ଝିଅ । ସମସ୍ତେ ସୁନ୍ଦରୀ । ଏକେ ଆରକୁ ବଳକରି । ଆମ ବଣିକର ଇଚ୍ଛା, ଯେଉଁ ବଣିକର ସାତ ପୁଅ ଥିବ, ତାରି ଘରେ ବନ୍ଧୁ କରିବ ।"

କଥାଟା ମେଳ ଖାଇଗଲା । ଦୁଇ ପୁରୋହିତଯାକ ବେଶ୍ ଖୁସି । ମନରେ ତାଙ୍କର ଅଶେଷ ଆନନ୍ଦ । ବାହାଘର ପକ୍କା କରିବାକୁ ସେମାନେ ଆଗ୍ରହୀ । ତେଣୁ ପରସ୍ପର ଭିତରେ ବିଭିନ୍ନ ସନ୍ଦେଶ ନେଣ ଦେଣ ହେଲା । ଶେଷକୁ ସେମାନେ ପ୍ରସ୍ତାବଟାକୁ ସ୍ଥିର କରିଦେଲେ । ତା'ପରେ ହସଖୁସିରେ ଘରକୁ ଫେରିଲେ ।

ଏ ଖବର ବଣିକଙ୍କୁ କୁଳ ପୁରୋହିତ ଜଣାଇ ଦେଲେ । ତା'ପରେ ଘର, ବର, କନ୍ୟା ଦେଖାଦେଖି ହୋଇ ବାହାଘର ଦିନ ବି ସ୍ଥିର ହୋଇଗଲା । ବାହାଘର ଦିନ ଯେତିକି ପାଖେଇ ଆସୁଥାଏ, ବଣିକ ସେତିକି ବ୍ୟସ୍ତ ହୋଇଉଠୁଥାନ୍ତି । ଘର ଆନନ୍ଦରେ ମୁଖରିତ ହୋଇଉଠିଲା । ହୋ ହୋ, ଧୋ ଧାରେ ଘର କମ୍ପିଲା ।

ସ୍ତ୍ରୀମାନେ ବିବାହ ସଙ୍ଗୀତ ଗାଇଲେ । ଘର ବାହାରେ ହସ ଖୁସି । ସମସ୍ତେ ମସଗୁଲ୍ । କିନ୍ତୁ ଜଣଙ୍କ ମନରେ ଜମାହେଲେ ସରାଗ ନଥାଏ । ସେ ଆଉ କେହି ନୁହଁ—ବଣିକର ସବା ସାନ ପୁଅ ।

ବିବାହ ଦିନ । ବର ଅନୁକୂଳର ବେଳ ହୋଇଗଲା । ବଡ଼ ଛ' ପୁଅ ବରବେଶ ପିନ୍ଧିଥାନ୍ତି । ସାନ କିନ୍ତୁ ବଡ଼ ବିଷାଦ ମନରେ ବସିଥାଏ । ଏକଥା ବଣିକ କାନରେ ପଡ଼ିଲା । ସେ ସାନ ପୁଅ ପାଖକୁ ଆସି ପଚାରିଲେ—"ତୋର କ'ଣ ହେଲା ? ତୁ ବରବେଶ କାହିଁକି ହେଉ ନାହୁଁ ? ଯା, ଶୀଘ୍ର ବରବେଶ ହୁଅ ।"

ସାନ ପୁଅ କହିଲା—"ବାପା, ମୁଁ ବରବେଶ ପିନ୍ଧି ବାହା ହେବାକୁ ଯାଇପାରିବି ନାହିଁ । ସେଥିପାଇଁ ମୁଁ ଭାରି ଦୁଃଖିତ । ତୁମର ଯଦି ମୋତେ ବାହା କରିବାକୁ ଏକଦମ୍ ଜିଦ୍, ମୋ ଖଣ୍ଡାଟିକୁ ନେଇଯାଅ । ବେଦୀରେ ଏ ମୋ କାମ ଚଳାଇଦେବ । ବାହାଘର ସାରି ଆସିଲାବେଳେ ବାଟରେ ହ୍ରଦଟିଏ ଦେଖିବ । ସେଠି ଜମା ଅପେକ୍ଷା କରିବ ନାହିଁ ।"

ବାପ ସାନ ପୁଅକୁ ଖୁବ୍ ଭଲପାଏ । ତା' କଥା କେବେ ତଳେ ପକାଏ ନାହିଁ । ଏଥର ମଧ୍ୟ ସାନ ପୁଅ କଥା ମାନିନେଲା । ସେ ମନେମନେ ଭାବିଲା—ସାନଟା ଗୋଠ ଅଳସୁଆ । ସେଥିପାଇଁ ଏତେ ବାଟ ସେ ଯିବାକୁ ଅମଙ୍ଗ । ସାନଯୋଗୁଁ ତ ବାହାଘର ଅଟକିବ ନାହିଁ । ତେଣୁ ସାନର ଏଇ ଅଭିନବ ଦାବୀକୁ ସେ ଗ୍ରହଣ କରିନେଲା ।

ସାଥିରେ ବନ୍ଧୁବାନ୍ଧବ ଓ ପ୍ରିୟ ଲୋକ । ଯଳଟଣର ସୀମା ନାହିଁ । ବଣିକଟି ଛ' ପୁଅଙ୍କୁ ବର ବେଶରେ ସଜାଇ ନୂଆ ସମୁଦ୍ଧି ଘରେ ପହଞ୍ଚିଗଲା ।

ଖୁବ୍ ଜାକଜମକରେ ବାହାଘର ଆରମ୍ଭ ହେଲା । ବଣିକଟି

ନୂଆ ସମୁଦ୍ଧକୁ ଡାକି କହିଲା—"ମୋ ସାନ ପୁଅଟି ଟିକିଏ ଅଳସୁଆ । ସେ ଆସି ନାହିଁ । ତା'ର ଖଣ୍ଡାଟିଏ ଦେଇଛୁ । ବେଦୀରେ ଖଣ୍ଡାଟି ଦ୍ୱାରା ତା'କାମ ଚଳାଇ ଦେବାକୁ କହୁଛୁ । କ'ଣ କରିବା କୁହନ୍ତୁ ?"

ନୂଆ ସମୁଦ୍ଧ କହିଲା—"ବ୍ୟସ୍ତ ହୁଅନ୍ତୁ ନାହିଁ । ସେଇ ଖଣ୍ଡାରେ କାମ ଚଳାଇ ଦେବା ।"

ବାହାଘର ସରିଲା । ସାନ ଛଡ଼ା ସବୁ ଭଉଣୀମାନେ ଖୁସି । ସାନ ମନରେ ଜମା ସୁଖ କି ସରାଗ ନଥାଏ । ସେ ଭାବୁଥାଏ— ସବୁ ଭଉଣୀମାନେ ଭାଗ୍ୟବନ୍ତ । ମୁଁ ହୀନମାନୀ । ସେମାନେ ତାଙ୍କ ସ୍ୱାମୀ ପାଖରେ ବେଦୀରେ ବସିଲେ । ମୁଁ କିନ୍ତୁ ଗୋଟିଏ ଖଣ୍ଡା ପାଖରେ ବସିଲି । ମୋର ବର କାହିଁକି ଆସିଲା ନାହିଁ, କେହି ବୁଝିଲେ ନାହିଁ । ମୋତେ ଲୋକହସା କଲେ, ସେଥିପାଇଁ କାହାର ଦୁଃଖ ନାହିଁ । ଏ ସବୁ ମୋର ଭାଗ୍ୟ । ନିଜ କର୍ମକୁ ସେ ଆଦରି ନେଲା । ଯନ୍ତ୍ରଚାଳିତ ପରି ସବୁ କାମ ସେ କରିଗଲା । ନିଜ ମନକୁ ନିଜେ ଖାଲି ସାନ୍ତ୍ୱନା ଦେଉଥାଏ ।

ବରଯାତ୍ରୀମାନେ ବର-କନ୍ୟା ସହ ବାହୁଡ଼ିଲେ । ବାଟରେ ଗୋଟିଏ ହ୍ରଦ ପଡ଼ିଲା । ସେତେବେଳକୁ ସମସ୍ତେ କ୍ଲାନ୍ତ । ବିଶ୍ରାମ ପାଇଁ ସମସ୍ତେ ବ୍ୟାକୁଳ । ସାନ ପୁଅ ଦେଇଥିବା ସତର୍କ ବାଣୀ ବଣିକର ମନେପଡ଼ିଲା । ସେ ସମସ୍ତଙ୍କୁ ସେଠାରେ ଅଟକିବାକୁ ବାରଣ କଲା । ସେମାନେ କାରଣ ଜାଣିବାକୁ ଚାହିଁବାରୁ, ସାନ ପୁଅ ଯାହା କହିଥିଲା, ତାହା କହିଲା । ସମସ୍ତେ ହସିଲେ । ବାପକୁ ତାର କହିଲେ—"ଯେ ନିଜେ ବାହା ହେବାକୁ ଆସିପାରିଲା ନାହିଁ, ସେ ପୁଣି ପରାମର୍ଶ ଦେଇଛୁ ! ଛାଡ଼, ତା' କଥା । ଚାଲ ଏଇଠି ସବାରୀ ଉଡ଼ିବା ।"

ସେମାନେ ସେଠି ବସିଛନ୍ତି କି ନାହିଁ, ହ୍ରଦର ପାଣି ମାଡ଼ି ଆସିଲା । ଗୁରପଟେ ପାଣି ଘେରିଗଲା । କେବଳ ସେମାନେ ଯେଉଁଠି ବିଶ୍ରାମ ନେଉଥିଲେ, ସେଠି ପାଣି ନ ଥିଲା । ହ୍ରଦରୁ ଶୁଣାଗଲା—"ତୁମେ ଯଦି ସବାଖ ସହ ଗୋଟିଏ ବୋହୂକୁ ଉତ୍ସର୍ଗ କରିଦେବ, ତାହାହେଲେ ଯାଇ ପାରିବ । ନଚେତ୍ ସମସ୍ତେ ପାଣିରେ ବୁଡ଼ି ମରିବ ।"

ସମସ୍ତଙ୍କ ମନ ଫିକା ପଡ଼ିଗଲା । ସମସ୍ତେ କ'ଣ କରିବେ, ଏଇ ଆଲୋଚନାରେ ବ୍ୟସ୍ତ । 'ସାନ ପୁଅ ମୋର ଠିକ୍ କଥା କହିଥିଲା', ବଣିକଟି ବାରମ୍ବାର ସ୍ମରଣ କରୁଥିଲା । ବୁଢ଼ା ବୁଢ଼ାଙ୍କ ମଧ୍ୟରେ ଆଲୋଚନା ଓ ମନ୍ତ୍ରଣା ଚାଲିଥିଲା । ସେମାନେ ଦେଖିଲେ—ସାନ ବାହା ହେବାକୁ ଆସିନାହିଁ । ସାନ ବୋହୂକୁ ଦେଖି ନାହିଁ । ବାହା ବି ହୋଇ ନାହିଁ । ଧର୍ମତଃ ସାନବୋହୂ ତା'ର ସ୍ତ୍ରୀ ନୁହେଁ । ତେଣୁ ତାକୁ ଉତ୍ସର୍ଗ କରିଦେଲେ, ସାନର ମନ କଷ୍ଟ ହେବାର ପ୍ରଶ୍ନ ଉଠୁ ନାହିଁ । ସେଥିପାଇଁ ସବାଖ ସହ ସାନ ବୋହୂକୁ ପାଣିରେ ଉତ୍ସର୍ଗ କରିଦେବାକୁ ନିଷ୍ପତ୍ତି କଲେ ।

ଯାହା ନିଷ୍ପତ୍ତି କଲେ, ସେଇଆ ବି କଲେ । ସାନବୋହୂ ନେହୁରି ନିକୁଟା ହୋଇ ଆପତ୍ତି କଲା । ସମସ୍ତେ ଆପଣାର ଜୀବନ ରଖିବାକୁ ଲାଳାୟିତ, ଅନ୍ୟ ପ୍ରତି ଦୟାର ପ୍ରଶ୍ନ ଉଠୁଛି କାହିଁକି ? ତେଣୁ କେହି ତା'ର କଥା ଶୁଣିଲେ ନାହିଁ । ସାନ ବୋହୂ ଦେଖିଲା— ତାର ଆପଣାର ହୋଇ କେହି ବାହାରିଲେ ନାହିଁ । ନିଜ ଭାଗ୍ୟକୁ ଆଦରି ସେ ସେମାନଙ୍କ କଥା ମାନିନେଲା । ନିର୍ବିକାର ଭାବରେ ସେ ସବାଖରେ ବସି ରହିଲା । ଲୋକମାନେ ସବାଖକୁ ପାଣିକୁ ଠେଲି ଦେଲେ । ଗୁହୁଁ ଗୁହୁଁ ପାଣି କମିଗଲା ।

ବରଯାତ୍ରୀମାନେ ଘରକୁ ଫେରି ଆସିଲେ । ଛ' ବୋହୂ

ଘରକୁ ଗଲେ । ସାନ ଠିଆ ହୋଇଥାଏ । ବାପକୁ ସେ ପଚାରିଲା— "ସାନବୋହୂ କଥା କ'ଣ ହେଲା ?"

ଯାହା ସବୁ ଘଟିଥିଲା, ସେ କଥା କହି ବାପ ତା'ର କାନ୍ଧ ପକାଇଲା । ପୁଅଟି ଆଖିରେ ଲୁହ । ସେ କାହାକୁ କିଛି କହିଲା ନାହିଁ । ଘୋଡ଼ା ପିଠିରେ ବସି ବାହାରି ପଡ଼ିଲା । ସିଧା ଯାଇ ହ୍ରଦ କୂଳରେ ପହଞ୍ଚିଲା । ଘୋଡ଼ାରୁ ଓହ୍ଲାଇ ସେ ଗୋଡ଼ହାତ ଧୂଆଧୋଇ କଲା । କ'ଣ କରିବ ସେ ଚିନ୍ତାରେ ସେ ମଗ୍ନ । ଏଇ ସମୟରେ ପାଣି ପାଖରେ ପଡ଼ିଥିବା ପଥର ଉପରେ ତା'ର ନଜର ପଡ଼ିଲା । ସେ ଦେଖିଲା—ପଥରଟି ସମ୍ପୂର୍ଣ୍ଣ ଧଳା । ତା'ର ମନେହେଲା, ସେ ଗୋଟିଏ ଦେବତା । ସେ ତା' ପାଖକୁ ଗଲା । ମୁଣ୍ଡ ଲଗାଇ ପ୍ରଣାମ କଲା । ପାଖରେ ତା'ର ନତମସ୍ତକ ହୋଇ ଠିଆହେଲା ।

ଦେଖୁଁ ଦେଖୁଁ ପଥରଟି ଗୋଟିଏ ମଣିଷ ହୋଇଗଲା । ତା'ର ଉଚ୍ଚତା ଅଠର ଇଞ୍ଚ । ସେହି ବାମନଟିକୁ ଦେଖି ଯୁବକଟି ଆଶ୍ଚର୍ଯ୍ୟ ।

ବାମନଟି କହିଲା—"ଡର ନାହିଁ । ତୁମେ ମୋର ଶରଣାପନ୍ନ । ମୋତେ ତୁମର ଦୁଃଖ କୁହ । ମୁଁ ତୁମକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ।"

ସାନ ପୁଅ ସବୁକଥା ତାଙ୍କୁ କହିଲା । ବାମନ କହିଲା—"ଏହା ଏକ ଦୁରୂହ ବ୍ୟାପାର । ଏଇ ହ୍ରଦରେ ଏକ ଅସୁର ରହିଛି । ତୋ' ସ୍ତ୍ରୀକୁ ସେ ନେଇ ପାଖରେ ରଖିଛି ।"

"ଅସୁରକୁ କ'ଣ ମାରିହେବ ନାହିଁ ?" ଏ ପ୍ରଶ୍ନ ଯୁବକର ମୁହଁରୁ ବାହାରି ଆସିଲା ।

ବାମନ କହିଲା—"ସଂସାରରେ ଅସମ୍ଭବ କିଛି ନାହିଁ । ସବୁ କାମ ସମ୍ଭବ କରିବାକୁ ଶକ୍ତି, ସାମର୍ଥ୍ୟ ଓ ସାହସ ଦରକାର । ତୁ

କ'ଣ ପାରବୁ ?"

ଯୁବକ କହିଲା—"ମୋ ସ୍ତ୍ରୀ ପାଇଁ ମୁଁ ପ୍ରାଣ ଦେବାକୁ ପ୍ରସ୍ତୁତ । ତେଣୁ ଯାହା ଦରକାର ପଡ଼ିବ, ମୁଁ କରିବାକୁ ରାଜି ।

ବାମନ କହିଲା—"ସାତ ସମୁଦ୍ର ଆରପାରିରେ ଗୋଟିଏ ବଡ଼ ଗଛ ଅଛି । ତା' ଅଗରେ ଗୋଟିଏ ପିଞ୍ଜରା ଝୁଲୁଛି । ସେଥିରେ ଗୋଟିଏ ଶୁଆ ଆବଦ୍ଧ ହୋଇ ରହିଛି । ସେ ଶୁଆଟି ଏ ଅସୁରର ପ୍ରାଣ । ତାକୁ ମାରିଦେଲେ, ଅସୁର ମରିଯିବ । ଗଛରେ ଚଢ଼ି ଶୁଆ ମାରିବା ସହଜ । କିନ୍ତୁ ସାତ ସମୁଦ୍ର ପାରିହୋଇ ସେଠାରେ ପହଞ୍ଚିବା ଦୁରୂହ, କଳ୍ପନାତୀତ ।

ଯୁବକଟି ଏସବୁ ଶୁଣି ଚିନ୍ତାକଲା । ସାତ ସମୁଦ୍ର ଯେମିତି ହେଲେ ତାକୁ ପାରିହେବାକୁ ହେବ । ତା'ର ଉପାୟ ବତାଇବାକୁ ସେ ବାମନକୁ ଅନୁରୋଧ କଲା । ବାମନ ମୁଣ୍ଡ ହଲାଇ ଅସମ୍ମତି ଜଣାଇଲା ।

ଯୁବକଟି ସେଠି ଆଉ ରହିଲା ନାହିଁ । ଘୋଡ଼ା ଛୁଟାଇ ଦେଲା । ଲକ୍ଷ୍ୟ କୁଆଡ଼େ ତା'ର ସେ ବି ଜାଣି ନ ଥିଲା । ବାଟରେ ଗୋଟିଏ କୁଡ଼ିଆ ପଡ଼ିଲା । ସେଠି ସେ ଅଟକିଲା । ଘୋଡ଼ାକୁ ବାହାରେ ବାନ୍ଧି ଭିତରେ ପଶିଲା । ସେ ଦେଖିଲା—ଜଣେ ଯୋଗୀ ଧ୍ୟାନରେ ବସିଛନ୍ତି । ସେ ସେଠି ଅପେକ୍ଷା କଲା । ଯୋଗୀ ଧ୍ୟାନରୁ ଉଠିଲେ । ଯୁବକଟି ତାଙ୍କୁ କିଛି କହିଲା ନାହିଁ । ତାଙ୍କ ସେବାରେ ଲାଗିପଡ଼ିଲା । ଯୋଗୀ ତା' ସେବାରେ ସନ୍ତୁଷ୍ଟହୋଇ ପଚାରିଲେ—"ବାବା, ତୁମ ସେବାରେ ମୁଁ ମୁଗ୍ଧ । ତମର କ'ଣ ଅସୁବିଧା ହୋଇଛି ମୋତେ କୁହ । ମୁଁ ତୁମକୁ ଯଥାସାଧ୍ୟ ସାହାଯ୍ୟ କରିବି ।"

ଯୁବକ ଆଖିରେ ଲୁହ । କଣ୍ଠ ତା'ର ବାଷ୍ପରୁଦ୍ଧ । ସେ ଥଙ୍ଗେଇ

ଅଙ୍ଗେଇ ହୋଇ ସବୁକଥା କହିଲା । ତା' କଥାରେ ଦରଦ ପୂରି ରହିଥିଲା । ତାହା ଯୋଗୀଙ୍କ ମନରେ ଦୟା ଆଣିଲା । ସେ ଯୁବକଟିକୁ ଗୋଟିଏ ବାଡ଼ି ଦେଇ କହିଲେ—"ଏଇଟା ଗୋଟେ କୁହୁକ ବାଡ଼ି । ଏହାକୁ ତୁ ଯାହା ବରାଦ ଦେବୁ, ଏ ତାହା କରିଦେବ । କିନ୍ତୁ ତାକୁ କୌଣସି ବରାଦ କରିବା ପୂର୍ବରୁ ପୂଜା କରିବୁ ।"

ଯୁବକଟି ବାଡ଼ିକୁ ନେଲା । ସେଇଠି ବସି ପୂଜାକଲା । ତା'ପରେ ହାତଯୋଡ଼ି ପ୍ରାର୍ଥନା କଲା—"ସାତ ସମୁଦ୍ର ଆରପାରିରେ ଗୋଟିଏ ବଡ଼ ଗଛ । ସେଥିରେ ଗୋଟିଏ ପିଞ୍ଜରା ବନ୍ଧା ହୋଇଛି । ତା' ଭିତରେ ଶୁଆଟିଏ ଅଛି । ସେଇ ଶୁଆଟିକୁ ମାରିଦେବାକୁ ହେବ ।"

ପାଟିରୁ ତାର କଥା ସରିନାହିଁ, ବାଡ଼ିଟି ଅଦୃଶ୍ୟ ହୋଇଗଲା । ଦୁଇ ଘଣ୍ଟା ପରେ ବାଡ଼ିଟି ଫେରି ଆସିଲା । ଗୋଟିଏ ଶୁଆର ମୃତ ଦେହ ତା' ସାଥିରେ ଆସିଥିଲା ।

ଯୁବକଟି ଶୁଆର ମୃତ ଶରୀର ଓ ବାଡ଼ି ଧରି ଯୋଗୀଙ୍କ ପାଖକୁ ଆସିଲା । ସେତେବେଳେ ମଧ୍ୟ ଯୋଗୀ ଧ୍ୟାନମଗ୍ନ ଥିଲେ । ସେ ଅପେକ୍ଷା କଲା । ଯୋଗୀଙ୍କ ଧ୍ୟାନ ଭାଙ୍ଗିବାରୁ ତାଙ୍କୁ ସେ ସମସ୍ତ କଥା କହିଲା । କୁହୁକ ବାଡ଼ିଟି ଫେରାଇ ଦେଲା । ଯୋଗୀ ଏସବୁ କଥା ଶୁଣି ଭାରି ଖୁସି । ବାଡ଼ିଟି ରଖିଲେ । ହ୍ରଦବାଟେ ଫେରିଯିବାକୁ ଆଦେଶ ଦେଲେ ।

ଯୁବକଟି ହ୍ରଦ ଯେଉଁଠି ଥିଲା, ସେଠାକୁ ଆସିଲା । ଆଶ୍ଚର୍ଯ୍ୟ ! ଯେଉଁଠି ପାଣିର ଲହଡ଼ି ଭାଙ୍ଗୁଥିଲା, ସେଠି ଟୋପେ ବି ପାଣି ନାହିଁ । ବହୁ ଦୂରରେ ସ୍ତ୍ରୀ ଲୋକଟିଏ ବସିଥିବାର ସେ ଦେଖିଲା । ସେଠାକୁ ଗଲା । ସେଠି ସ୍ତ୍ରୀ ଲୋକଟିଏ କାନ୍ଦୁଥିଲା ।

ଝିଅଟିକୁ ପଚ୍ଚରିବାରୁ ସେ ସମସ୍ତ କଥା କହିଲା । ଶେଷକୁ ଯୁବକଟି ତା'ର ପରିଚୟ ଦେଲା ।

ସେମାନେ ସେଇଠୁ ଘରକୁ ଫେରିଲେ । ଆନନ୍ଦରେ ଘର ସଂସାର କଲେ ।



# ବାଘ ଦଉଡ଼ି ପିଠ୍ ବାଡ଼ି

ଜଣେ ରାଜା ଥିଲେ । ତାଙ୍କର ପାଞ୍ଚ ପୁଅ । ବଡ଼ ଚାରିଜଣ ସବୁ କାମକୁ ଧୁରନ୍ଧର । ସାନ ଅଳସୁଆ, ଅବୋଲକରା । ରାଜା ସବୁବେଳେ ତା' ଉପରେ ଅସନ୍ତୁଷ୍ଟ । ଭାଇମାନେ ତା' ଉପରେ ବିରକ୍ତ । ଦିନେ ସେ ବାପ ଭାଇଙ୍କୁ କହିଲା—"ମୋର ସହିବାର ସୀମା ଅଛି । ମୋର ତାହା ସରିଗଲାଣି । ମୁଁ ଯାଉଛି । ମୋ ଭାଗ୍ୟରେ ଯାହା ଥିବ, ତା' ହେବ । ଏଠି ରହି ଗାଳି ଖାଇବାର ଆଉ ଆବଶ୍ୟକତା ନାହିଁ ।" ଏତକ କହି ସେ ଘରୁ ବାହାରି ପଡ଼ିଲା । ରୋଷେଇ ଘରେ ପଶିଲା । ସେଠୁ କିଛି ଅଟା ସଂଗ୍ରହ କଲା । ସେତକ ଗୋଟିଏ କନାରେ ବାନ୍ଧିଲା । ବୁଜୁଳାଟି ମୁଣ୍ଡ ଉପରେ ରଖିଲା । ଟୋପିଟି ତା' ଉପରେ ପିନ୍ଧିଲା । ତା'ପରେ ଆଉ କିଛି ନ ନେଇ ଘରୁ ବାହାରି ପଡ଼ିଲା । କେହି ତା' ଉପରେ ସନ୍ତୁଷ୍ଟ ନଥିଲେ । ତେଣୁ କେହି ତାକୁ ଅଟକାଇଲେ ନାହିଁ ।

ଯାଉ ଯାଉ ସେ ଗୋଟିଏ ନଈ କୂଳରେ ପହଞ୍ଚିଲା । ସେଠି ଗୋଟିଏ ବଡ଼ ପଥର ପଡ଼ିଥିଲା । ତା' ଉପରେ ବସି ଅଟାକୁ ବାହାର କଲା । ସେଠି ସାତଟି ରୁଟି କଲା । ତାକୁ ଖାଇବା ପୂର୍ବରୁ ସେ ଚିତ୍କାର କଲା—"ସାତଟାଯାକ ସବୁ ଖାଇବି ।"

ସେଇ ପଥର ତ .ଳ ଅସୁରୁଣୀଟିଏ ରହେ । ତାର ସାତଟି ପିଲା । ଏ ଗର୍ଜନ ଶୁଣି ସେ ଭାବିଲା—କଏ ଗୋଟେ ଆସି ତା' ପିଲା ସାତଟାଙ୍କୁ ଖାଇବାକୁ କହୁଛି । ସେ ଡରିଗଲା । ପିଲାଙ୍କୁ ରକ୍ଷା କରିବା ପାଇଁ ରାଜା ପୁଅ ପାଖକୁ ଆସି ହାତଯୋଡ଼ି କହିଲା—"ମୋ ପିଲାଙ୍କୁ ଖାଅ ନାହିଁ । ମୁଁ ତମକୁ ଏଇ ପାନଟି ଦେଉଛି । ଯେତେବେଳେ ତୁମକୁ ଭୋକ କରିବ, ସେତେବେଳେ ତୁମେ କହିବ—'ଫୁର' । ତୁମର ଯାହା ଖାଇବା ଦରକାର ସେ ସବୁ ଆଣି ଦେଇଦେବ ।"

ପାନଟି ପାଇ ରାଜପୁଅ ଫେରିଲା । ବାଟରେ ଗୋଟିଏ ଜାଗାରେ ଅନ୍ଧାର ହୋଇଗଲା । ସେଠି ଗୋଟେ ବୁଢ଼ୀର ଘରେ ଆଶ୍ରୟ ନେଲା । ରାତିରେ ଖାଇବା ବେଳକୁ ରାଜପୁଅ କହିଲା—'ଫୁର...' । ସତକୁ ସତ ବଢ଼ିଆ ବଢ଼ିଆ ରନ୍ଧା ଜିନିଷ ତା' ପାଖରେ ଥୁଆ ହୋଇଗଲା । ପୁଅଟି ମନବୋଧ କରି ଖାଇ ଶୋଇଗଲା । ବୁଢ଼ୀଟି ଏସବୁ ଦେଖୁଥାଏ । ପୁଅକୁ ଯେମିତି ନିଦ ହୋଇଛି, ସେ ପାନଟି ନେଇ ଘରେ ଲୁଚାଇ ଦେଲା ।

ରାତି ଶେଷକୁ ବୁଢ଼ୀ ଡକା ପକାଇଲା । ସାହି ପଡ଼ିଶା ଧାଇଁ ଆସିଲେ । ସେମାନଙ୍କ ଆଗରେ ବୁଢ଼ୀ କାନ୍ଦି କାନ୍ଦି କହିଲା—"ରାତିରେ ଚୋର ପଶି ମୋ ବାସନକୁସନ ନେଇଗଲା ।"

ରାଜପୁଅ ତା' ପାନ ଖୋଜିଲା । ସେଇଟା ନଥିଲା । ବୁଢ଼ୀକୁ ପଚାରିବାରୁ ସେ କହିଲା—"ମଲା, ମୋର ଏତେ ଜିନିଷ ନେଇଗଲା । ତୋର ପାନଟିଏ ନେଇଗଲା ବୋଲି ଏତେ ଦୁଃଖ ?"

ହତଭାଗ ରାଜପୁଅଟିର ଉପାୟ ନଥିଲା । ସେଇଠୁ ସେ ପୁଣି ନଈ କୂଳର ପଥର ପାଖକୁ ଆସି ଚିତ୍କାର କଲା—"ସାତଟାଯାକ ସବୁ ଖାଇବ ।" ଅସୁରୁଣୀ ଏ ଚିତ୍କାର ଶୁଣି ଭୟ କଲା । ସେ ଆସି

କହିଲା—"ଏଇ ଛେଳିଟି ନେ ! ଯେତେବେଳେ ଇଚ୍ଛା ସେତେ-ବେଳେ ଦୁହିଁବୁ । ଏ ପ୍ରଚୁର ଦୁଧ ଦେବ । ଚେଷ୍ଟା କଲେବି ତୁ ଏତେ ପିଇପାରିବୁ ନାହିଁ । ତେଣୁ ତୋର ଖାଇବାରେ କିଛି ଅସୁବିଧା ହେବ ନାହିଁ ।"

ଛେଳିଟି ଧରି ଖୁସି ମନରେ ରାଜପୁଅ ଆସିଲା । ପୂର୍ବଦିନ ଯେଉଁ ବୁଢ଼ୀ ଘରେ ରାତି କଟାଇଥିଲା, ସେଠାକୁ ଗଲା । ପ୍ରଥମେ ପ୍ରଥମେ ବୁଢ଼ୀ ତାକୁ ଦେଖି ଡରିଗଲା । କିନ୍ତୁ ପରେ ଜାଣିଲା ଯେ ଏଥର ଆଗନ୍ତୁକ ଛେଳିଟିଏ ଧରି ଆସିଛି । ପାନ ପାଇଁ ସେ ବ୍ୟସ୍ତ ହେଉ ନାହିଁ । ବୁଢ଼ୀର ଆଉ ଭୟ ରହିଲା ନାହିଁ ।

ରାତିରେ ଛେଳି ଯାହା ଦୁଧ ଦେଲା, ତାକୁ ଦେଖି ବୁଢ଼ୀର ଆଖି ଖୋସି ହୋଇଗଲା । ରାତିରେ ବୁଢ଼ୀ ଛେଳିଟିକୁ ନେଇଗଲା । ଅନ୍ୟଟି ଲୁଚାଇ ଦେଇ ଆସିଲା । ସକାଳେ ରାଜପୁଅ ଛେଳି ଖୋଜି-ବାରୁ ସେ କହିଲା—"ଶେର ଆସି ତୁମର ଛେଳିଟି ନେଇଗଲା । ମୁଁ କ'ଣ କରିବି ? ରାତିସାକ କ'ଣ ଜଗି ବସିଥାନ୍ତି ?"

ରାଜପୁଅ ହତବାକ୍ ହୋଇଗଲା । କିଛି ସମୟ ସେ ଚିନ୍ତା କଲା । ନଈକୂଳ ପଥର ପାଖକୁ ଫେରି ଆସିଲା । ପୁଣି "ସାତଟା ଯାକକୁ ଖାଇବି" ବୋଲି ଚିତ୍କାର କଲା । ପାଟି ଶୁଣି ଅସୁରୁଣୀ ଆସି ଦଉଡ଼ିଟିଏ ଓ ବାଡ଼ିଟିଏ ଦେଇ କହିଲା—"ଯାହାକୁ ଏ ଦଉଡ଼ିକୁ ବାନ୍ଧିବାକୁ କହିବୁ, ସେ ବାନ୍ଧିଦେବ । ଯାହାକୁ ପିଟ୍ ବୋଲି କହିବୁ, ତାକୁ ଏ ପିଟିବ । ତୁ ମନା କଲେ, ସେମାନେ ତାଙ୍କ କାମ ବନ୍ଦ କରିବେ ।"

ରାଜପୁଅ ଆସି ବୁଢ଼ୀ ଘରେ ପହଞ୍ଚିଲା । କିଛି ନୂଆ ଜିନିଷ ଆଣିଥିବ ବୋଲି ଭାବି ବୁଢ଼ୀ ବି ଖୁସି । କିନ୍ତୁ ବୁଢ଼ୀକୁ ଦେଖୁ ଦେଖୁ ରାଜପୁଅ ଦଉଡ଼ିକୁ କହିଲା—"ବାନ୍ଧ୍ ଓ ବାଡ଼ିକୁ କହିଲା—

ପିଟ୍" ।

ବୁଢ଼ୀକୁ ଦଉଡ଼ି ବାନ୍ଧିଲା ଓ ବାଡ଼ି ପିଟିଲା ଖୁବ୍ ଜୋରରେ । ବୁଢ଼ୀ ଆଉଁଲେ ବୋଉରେଲ ବହୁତ ହେଲା । ହାତଯୋଡ଼ି ନେହୁରା ନକୁଟା ହେଲା । ରାଜପୁଅ କଥା ଶୁଣିଲା ନାହିଁ । ଶେଷକୁ ବୁଢ଼ୀ ଦେଖିଲା ଯେ ତା'ର ଆଉ ପରିତ୍ରାଣର ବାଟ ନାହିଁ । ସେଥିପାଇଁ ପାତ୍ର ଓ ଛେଲି ଫେରାଇଦେବ ବୋଲି କହିଲା । ରାଜପୁଅ ଆଦେଶରେ ଦଉଡ଼ି ଖୋଲିଗଲା ଓ ବାଡ଼ି ପିଟିବା ବନ୍ଦ କରିଦେଲା ।

ରାଜପୁଅ ପାତ୍ର, ଛେଳି, ଦଉଡ଼ି ଓ ବାଡ଼ି ଧରି ଫେରିଲା । ବାଟରେ ଗୋଟିଏ ଜଙ୍ଗଲ ପଡ଼େ । ସେଠି ଗୋଟିଏ ଅସୁର ରହେ । ତା' ଭୟରେ ଦେଶଟା ଯାକର ଲୋକ ଥରହର ।

ରାଜପୁଅ ପହଞ୍ଚିଲା ବେଳକୁ ଅସୁରକୁ ନଘୋଡ଼ି ନଦ । ତାକୁ ବାନ୍ଧି ପକାଇବାକୁ ଦଉଡ଼ିକୁ ଓ ପିଟିବାକୁ ବାଡ଼ିକୁ ଆଦେଶ ଦେଲା । ଦଉଡ଼ି ତାକୁ ବାନ୍ଧି ପକାଇଲା । ବାଡ଼ି ପିଟିଲା । ପିଟି ପିଟି ଅସୁରକୁ ନସ୍ତାନାବୁଦ କଲା । ଅସୁର ଆଉ ସହିପାରିଲା ନାହିଁ । କାକୁତିମିନତି ହୋଇ ତାକୁ ମୁକ୍ତ କରିବାକୁ ଅନୁରୋଧ କଲା ।

ରାଜପୁଅ କହିଲା —"ତୁ ଯଦି ମୋର ଚାକର ହୋଇ ରହିବୁ, ମୁଁ ତୋତେ ମୁକ୍ତ କରିଦେବି ।"

ଅସୁର ତ ଉପାୟହୀନ । ରାଜପୁଅ କଥାରେ ସେ ରାଜି ହୋଇଗଲା । ରାଜପୁଅ ସେଇ ଜଙ୍ଗଲରେ ରହିଲା । ଅସୁର ତା'ର ଚାକର । ଖାଇବା ଜିନିଷ ଦେବାକୁ ପାତ୍ର ଅଛି । ଦୁଧ ପିଇବାକୁ ଛେଳି ଅଛି । ଯେ ତାକୁ ନ ମାନିବ, ଦଉଡ଼ି ବାନ୍ଧିବ । ବାଡ଼ି ପିଟିବ । ବେଶ୍ ଆରାମରେ ସେ ତା'ର ଜୀବନଯାପନ କଲା ।

❀

# ବାଣ ଭଞ୍ଜ

ବହୁଦିନ ତଳେ ଏବେକାର କାଙ୍ଗଡ଼ା ଜିଲା, ଗୋଟିଏ ରାଜ୍ୟ ଥିଲା । ସେଠି ଜଣେ ରାଜା ରାଜୁତି କରୁଥିଲେ । ସେ ସବୁ ରାଜାଙ୍କ-ଠାରୁ ଭିନ୍ନ ଓ ଅଲଗା ଥିଲେ । ସେ ସରଳ ଓ ନିରାଡ଼ମ୍ବର ଜୀବନଯାପନ କରୁଥିଲେ । ସେଥିପାଇଁ ସେ ଦୁର୍ଗ ଭିତରେ ରହୁ ନଥିଲେ । ଦୁର୍ଗକୁ ଲାଗି ଗୋଟିଏ ଘର ଥିଲା । ସେଇଠି ସେ ତାଙ୍କ ସ୍ତ୍ରୀଙ୍କ ସହିତ ରହୁଥିଲେ । ତାଙ୍କର ଚଳିବା ପାଇଁ ରାଜକୋଷରୁ ପଇସାଟିଏ ବି ଖର୍ଚ୍ଚ କରୁ ନ ଥିଲେ । ରାଜକାର୍ଯ୍ୟ ସରିଲାପରେ ସେ ତାଙ୍କ ଘରକୁ ଚାଲି ଆସୁଥିଲେ । ସେଇଠି ସେ ସମୟ ନଷ୍ଟ ନ କରି ଦଉଡ଼ି ବଳୁଥିଲେ ।

କ୍ଷମତା ଯେଉଁଠି ଥାଏ, ସେଠି ତୋଷାମଦକାରୀଙ୍କର ଅଭାବ ନଥାଏ । ସେମାନେ କ୍ଷମତାପନ୍ନ ଲୋକଙ୍କୁ ମୁଣ୍ଡରେ ମୁଣ୍ଡାନ୍ତି । ସେଥିପାଇଁ ରାଜା ବି ହୁସିଆର ଥିଲେ । ତାଙ୍କ ବଳା ଦଉଡ଼ି ଅଧିକ ଦରରେ ଯେପରି ବିକ୍ରି ନ ହୁଏ, ସେଥିପାଇଁ ସେ କଡ଼ା ନଜର ଦେଉଥିଲେ । ଉଚିତ ଦରରେ ଦଉଡ଼ିକୁ ବିକି ଯାହା ମିଳୁଥିଲା, ସେଥିରେ ସେ ଚଳୁଥିଲେ ।

ପ୍ରଜାମାନେ ତାଙ୍କ ଉପରେ ଖୁବ୍ ସନ୍ତୁଷ୍ଟ ଥିଲେ । ହିମାଚଳ ଭାଷାରେ ଦଉଡ଼ିକୁ ବାଣ କୁହାଯାଏ । ଭଞ୍ଜ ମାନେ ବାଣ୍ଟିବା । ରାଜା ଦଉଡ଼ି ବଳି ବାଣ୍ଟୁଥିବାରୁ ଲୋକେ ତାଙ୍କୁ 'ବାଣ ଭଞ୍ଜ' ବୋଲି କହୁଥିଲେ । ଫଳରେ ରାଜା ବାଣ ଭଞ୍ଜ ନାମରେ ପରିଚିତ ହୋଇଗଲେ । ତାଙ୍କର ପ୍ରକୃତ ନା କୁଆଡ଼େ ଲୁଚିଗଲା । କେହି କେବେ ତାଙ୍କର ଭଲ ନାମ କ'ଣ କହିପାରିଲେ ନାହିଁ ।

ରାଜା ବାଣ ଭଞ୍ଜଙ୍କ ସମୟରେ କାଙ୍ଗଡ଼ା ରାଜ୍ୟ ଖୁବ୍ ସମୃଦ୍ଧ

ଥିଲା । ପ୍ରଜାମାନେ ସୁଖ ଶାନ୍ତିରେ ଥିଲେ । ଶାସନ ଚଳିବା ପାଇଁ ରାଜା କୌଣସି ପ୍ରକାର ଟିକସ ନେଉ ନଥିଲେ । ପ୍ରଚୁର ଶସ୍ୟ ଫଳୁଥିଲା । ପ୍ରଜାମାନେ ଅଭାବ କ'ଣ ଜାଣୁ ନଥିଲେ ।

ପ୍ରତିବର୍ଷ କାଙ୍ଗଡ଼ାରେ ଗୋଟିଏ ମେଳା ହୁଏ । ଏଠାକୁ ବହୁ ଲୋକ ଆସନ୍ତି । ସବୁ ଜିନିଷ ଏଠାରେ କିଣାବିକା ହୁଏ । ଏ ରାଜ୍ୟରେ ତ ଚୋରର ଡକାୟତର ଜମା ଭୟ ନଥିଲା । ସେଥିପାଇଁ ଭଲ ଭଲ ଲୁଗା ଓ ଅଳଙ୍କାର ପିନ୍ଧି ସ୍ତ୍ରୀ ଲୋକମାନେ ଏ ମେଳାକୁ ଆସୁଥିଲେ ।

ଥରେ ରାଜା ବାଣ ଭଞ୍ଜ, ତାଙ୍କ ସ୍ତ୍ରୀ ମେହେନ୍ତା ସେ ମେଳା ଦେଖିବାକୁ ଯାଇଥିଲେ । ପ୍ରତିଦିନ ଯେଉଁ ମୋଟା ଲୁଗା ସେମାନେ ପିନ୍ଧନ୍ତି, ତାକୁ ସେମାନେ ବି ପିନ୍ଧିଥିଲେ । ଲୋକମାନଙ୍କ ସହିତ ଅବାଧରେ ସେମାନେ ମିଶି ମେଳା ଦେଖୁଥିଲେ । ଫଳରେ ସେ ଯେ ଏ ଦେଶର ରାଜା, ଏକଥା ସାଧାରଣ ଲୋକଙ୍କୁ ମାଲୁମ ହେଉ ନଥିଲା । କିନ୍ତୁ ତାଙ୍କୁ ଯେ ଜାଣେ, ସେ ଚକିତ ଆଡ଼େଇ ହୋଇ ଯାଉଥିଲା ।

ସେହି ସମୟରେ କାଙ୍ଗଡ଼ାରେ ଜଣେ ବଣିକ ଥିଲେ । ସେ ଖୁବ୍ ଧନୀ । ଧନରେ ତାଙ୍କ ସମକକ୍ଷ କେହି ନଥିଲେ । ସେଥିପାଇଁ ତାଙ୍କ ସ୍ତ୍ରୀଙ୍କର ଭାରି ଗର୍ବ । ତାଙ୍କର ଗୋଟିଏ ହାର ଥିଲା । ତା'ର ଦାମ ନଅଲକ୍ଷ ଟଙ୍କା । ସେ କଥା ଶୁଣିବା ଲୋକ, ସେଇ ହାରକୁ ଦେଖିବାକୁ ଆଗ୍ରହୀ ।

ବଣିକର ସ୍ତ୍ରୀ ସେ ହାର ପିନ୍ଧି ମେଳାକୁ ଯାଏ । ତେଣୁ ସେ ଯୁଆଡ଼େ ଯାଏ, ସେଇଆଡ଼େ ଜନଗହଳି ।

ବଣିକ ଓ ତା' ସ୍ତ୍ରୀର ରାଜା ରାଣୀଙ୍କ ସାଥିରେ ଦେଖାହେଲା । ବଣିକ କିଛି ସମୟ ରାଜାଙ୍କ ସାଥିରେ କଥାବାର୍ତ୍ତା କଲା । ବଣିକର

ସ୍ତ୍ରୀ ବ ରାଣୀଙ୍କୁ ଭେଟି କଥା ହେଲେ । ରାଣୀଙ୍କର ଦେହରେ କିଛି ଅଳଙ୍କାର ନଥିଲା । ସେ ମୋଟା ଲୁଗା ପିନ୍ଧିଥିଲେ । ଏସବୁ ଦେଖି ବଣିକର ସ୍ତ୍ରୀ ରାଣୀଙ୍କୁ ବିଶେଷ ଖାତିର କଲା ନାହିଁ । ରାଣୀ ଏକଥା ଅନୁଭବ କଲେ । ରାଣୀଙ୍କର ବଣିକର ସ୍ତ୍ରୀ ପରି ହାର ନାହିଁ, ସେଥିପାଇଁ ତାଙ୍କର ଦୁଃଖ ହେଲା । ସେ ଦୁଃଖ ରାଣୀ ମନରୁ ପୋଛି ପାରିଲେ ନାହିଁ ।

ମେଳାକୁ ଫେରି ରାଜା ରାଣୀଙ୍କର ମନକଷ୍ଟ କଥା ଜାଣି ପାରିଲେ ନାହିଁ । ପରଦିନ ସେ ରାଜକାର୍ଯ୍ୟ କରିବାକୁ ଗଲେ । ଫେରି ଦେଖିଲେ ଯେ ରାଣୀ ଘର କାମ କିଛି କରିନାହାନ୍ତି । ଚୁପ୍ ହୋଇ ବସିଛନ୍ତି । ମନରେ ତାଙ୍କର ଅଶେଷ ଦୁଃଖ, ସେ କଥା ତାଙ୍କ ମୁହଁରୁ ଜଣା ଯାଉଥିଲା ।

ରାଜା ଏହା ଦେଖି ବିସ୍ମିତ ଓ ବିବ୍ରତ ହେଲେ । ଦୁଃଖର କାରଣ ଜାଣିବାକୁ ଚାହିଁଲେ । ରାଣୀ ପ୍ରଥମେ ପ୍ରଥମେ କିଛି କହିଲେ ନାହିଁ । ରାଜା ବାଧ୍ୟ କରିବାରୁ ସେ କହିଲେ—"ମୁଁ ଏ ଦେଶର ରାଣୀ । ସାମାନ୍ୟ ରୁଟି ହ'ଖଣ୍ଡ ଖାଇବା ପାଇଁ ମୋତେ ଦିନସାରା ପରିଶ୍ରମ କରିବାକୁ ହୁଏ । ସାଧାରଣ ସ୍ତ୍ରୀ ଲୋକ ପରି ମୁଁ ବାହାରୁ ମାଟି ମାଠିଆରେ ପାଣି ଆଣେ । ମୋର ଅଳଙ୍କାରଟିଏ ନାହିଁ । ମୋ ହାତକଟା ସୂତାରେ ମୁଁ ଲୁଗା ବୁଣି ପିନ୍ଧେ । ତୁମେ ଚାଲି-ଗଲେ ମୁଁ ଏକାକୀ ଏଇ କୁଡ଼ିଆରେ ରହେ । ଦୁଃଖ କଷ୍ଟରେ ଜୀବନ କାଟେ । ଏ ଜୀବନ ମୋତେ ଆଉ ଭଲ ଲାଗୁନାହିଁ । ମୁଁ ଏହାକୁ ଘୃଣା କରୁଛି । ତୁମେ ଯଦି ମୋତେ ଶାନ୍ତିରେ ରଖିବାକୁ ଚାହିଁ, ମୋତେ ନଅଲକ୍ଷ ଟଙ୍କା ମୂଲ୍ୟର ହାରଟିଏ ଦିଅ । ମୁଁ ତାକୁ ପିନ୍ଧେ । ମୋର ସମ୍ମାନ ଆସୁ ।"

ଏକଥା ଶୁଣି ରାଜାଙ୍କର ଭାରି ଦୁଃଖ ହେଲା । ସେ ଏପରି

ଜୀବନଯାପନ କାହିଁକି କରୁଛନ୍ତି, ସେକଥା ସେ ରାଣୀଙ୍କୁ ବୁଝାଇଲେ । କିନ୍ତୁ ରାଣୀ କିଛି ବୁଝିଲେ ନାହିଁ । ଏ କଥାର ପ୍ରଭାବ ତାଙ୍କ ଉପରେ କିଛି ପଡ଼ିଲା ନାହିଁ । ରାଜାଙ୍କ ମନ ମରିଗଲା । ସେ ପାତ୍ର ମନ୍ତ୍ରୀଙ୍କ ସହ ପରାମର୍ଶ କଲେ ।

ବାଣ ଭଞ୍ଜ ଯେଉଁ ଶାସନ କରୁଥିଲେ, ସେଥିରେ ପାତ୍ର ମନ୍ତ୍ରୀମାନେ କିଛି ସୁବିଧା ପାଉ ନଥିଲେ । ରାଜାଙ୍କର ଲୋକପ୍ରିୟତା ପାଇଁ ସେମାନେ ଚୁପ୍ ରହିଥିଲେ । ରାଜାଙ୍କର ଅସହାୟତାର ସୁଯୋଗ ସେମାନେ ନେଲେ । ପ୍ରଜାଙ୍କ ଉପରେ ଟିକସ ବସାଇ ସେଥିରେ ରାଣୀଙ୍କ ପାଇଁ ହାର କିଣିବାକୁ ପ୍ରସ୍ତାବ ଦେଲେ । ରାଜା ସେମାନଙ୍କ କଥା ମାନି ନେଲେ । ଟିକସ ବସିଲା । ନଅ ଲକ୍ଷ ଟଙ୍କାର ହାର କିଣିବାକୁ ତାଙ୍କୁ ବେଶି ସମୟ ଲାଗିଲା ନାହିଁ । ରାଣୀ ହାର ପାଇଲା ଦିନୁ ଖୁବ୍ ଫୁଲି ଉଠିଲେ । ମନରେ ତାଙ୍କର ଗର୍ବ, ଅହଙ୍କାର ବଢ଼ି ଚାଲିଲା । କିନ୍ତୁ ରାଜା ବାଣ ଭଞ୍ଜଙ୍କ ମନରେ ଶାନ୍ତି ନଥିଲା । ଦିନକୁ ଦିନ ତାଙ୍କର ମନର ଅବସ୍ଥା ଖରାପ ହୋଇ ଆସିଲା ।

ଦିନେ ରାଜକାର୍ଯ୍ୟ ସରିଲା ପରେପରେ ସେ ଭାରି ଅସ୍ୱସ୍ତି ଅନୁଭବ କଲେ । ଘରକୁ ଫେରି ଦେଖିଲେ, ତାଙ୍କୁ ଭାରି ଜ୍ୱର । ସେ କଥା ସେ ରାଣୀଙ୍କୁ କହିଲେ । ରାଣୀ ରାଜାଙ୍କ ଦେହ ତାତିବା ଦେଖି ବ୍ୟସ୍ତ ହୋଇ ଉଠିଲେ । ରାଜାଙ୍କୁ ଶୋଷ ହେଲା । ପାଣି ଟିକିଏ ପିଇବା ପାଇଁ ସେ ମାଗିଲେ । ଘରେ ପାଣି ନ ଥିଲା । ରାଣୀ ପାଣି ପାଇଁ ମାଠିଆଟି ନେଇ କୂଅ ପାଖକୁ ଧାଇଁଲେ । ଦଉଡ଼ିରେ ମାଠିଆଟି ବାନ୍ଧି କୂଅକୁ ପକାଇଲେ । ଆଶ୍ଚର୍ଯ୍ୟ ! ମାଠିଆଟି ପାଣିରେ ପଡୁ ପଡୁ ମିଳେଇଗଲା । ରାଣୀ ଏ କଥା ଦେଖି ଘରକୁ ଧାଇଁଲେ । ଆଉ ଗୋଟିଏ ମାଠିଆ ନେଇ ପାଣିପାଇଁ ଗଲେ । ସେ ମାଠିଆଟି ବି

ମିଳେଇ ଗଲା । ପୁଣି ସେ ଘରକୁ ଆସି ଆଉ ଗୋଟିଏ ମାଠିଆ ନେଲେ । ତାର ଅବସ୍ଥା ପୂର୍ବ ମାଠିଆ ପରି ହେଲା । ସେ ପୁଣି ମାଠିଆ ପାଇଁ ଘରକୁ ଧାଇଁଲେ । ପ୍ରତ୍ୟେକ ଥର ଘରେ ପହଞ୍ଚି ସ୍ୱାମୀଙ୍କର ବିକଳ ଚିତ୍କାର ଶୁଣନ୍ତି । କିନ୍ତୁ ମାଠିଆ ନେଇ କୂଅ ମୂଳକୁ ଧାଇଁବା ସାର ହୁଏ । ପାଣିରେ ପଡ଼ିବା ମାତ୍ରେ ମାଠିଆ ମିଳାଇଯାଏ । ଏହା ତାଙ୍କୁ ବିସ୍ମିତ କଲା । ସ୍ୱାମୀଙ୍କୁ ପାଣି ଟୋପେ ଦେଇପାରିଲେ ନାହିଁ । ଏଥିପାଇଁ ସେ ବିବ୍ରତ ହୋଇ ପଡ଼ିଲେ । ସେ ସେଠି ବସିପଡ଼ି ଚିନ୍ତା କଲେ । ପୋଡ଼ା ମାଟି ମାଠିଆ ଯେ କାହିଁକି ମିଳେଇ ଯାଉଛି ତାହାହିଁ ହେଲା ତାଙ୍କ ଚିନ୍ତାର ବିଷୟ । ସେ ବହୁତ ଭାବିଲେ । ଶେଷକୁ ସ୍ଥିର କଲେ ଯେ, ଏଇ ନଅ ଲକ୍ଷ ଟଙ୍କାର ହାରହିଁ ତାଙ୍କ ଦୁଃଖର କାରଣ । ବେକରୁ ହାର ବାହାର କରି କୂଅକୁ ଫିଙ୍ଗି-ଦେଲେ । ଶେଷ ମାଠିଆଟି ସେ କୂଅକୁ ପକାଇଲେ । ତାହା ମିଳେଇଲା ନାହିଁ । ପାଣି ଧରି ସେ ସ୍ୱାମୀଙ୍କ ପାଖକୁ ଆସିଲେ । କିନ୍ତୁ ସେତେବେଳକୁ ରାଜାଙ୍କର ଶୋଷରେ ପ୍ରାଣ ଛାଡ଼ି ଯାଇଥିଲା ।

ରାଣୀ ଖୁବ୍ କାନ୍ଦିଲେ । ଅଳ୍ପ ସମୟ ପରେ ସେ ପାଗଳୀ ହୋଇଗଲେ । କିଛିଦିନ ପରେ ସେ ମରିଗଲେ ।

ଯେଉଁ ଚାମ୍ବାର ରାଜ୍ୟ ଖୁବ୍ ସମୃଦ୍ଧ ଥିଲା, ଲୋକମାନେ ସୁଖ ଶାନ୍ତିରେ କାଳ କାଟୁଥିଲେ, ରାଜା ବାଣ ଭଟ୍ଟଙ୍କର ମୃତ୍ୟୁ ପରେ ତାର ସମୃଦ୍ଧି ଲୋପ ପାଇଗଲା । ଲୋକେ ଗରିବ ହୋଇ ଗଲେ । ଖାଇବାକୁ ପାଇବା ବି କଷ୍ଟ ହେଲା ।

ଲୋକେ ଏବେ ବି ରାଜା ବାଣ ଭଟ୍ଟଙ୍କୁ ମନେ ପକାନ୍ତି । ସମ୍ମାନ ଦିଅନ୍ତି । କିନ୍ତୁ ରାଣୀଙ୍କର ନଅ ଲକ୍ଷ ଟଙ୍କାର ହାର ଏ ରାଜ୍ୟର ଦୁଃଖ ଦୁର୍ଗତିର ଯେ କାରଣ, ଏବେ ବି ଲୋକମାନଙ୍କର ଭୁଣ୍ଡର କଥା ।

❀

# ଲୋଭୀ ବଣିକ ଓ ତାର ସ୍ତ୍ରୀ

ଶୀତ ଋତୁ । ଶ୍ରାବଣ ବର୍ଷା । ମର୍ତ୍ତ୍ୟରେ ଭକ୍ତମାନେ ଏ ଅସମୟରେ କପଡ଼ ଅଛନ୍ତି, ତାହା ଦେଖିବାକୁ ମା' ଲକ୍ଷ୍ମୀଙ୍କର ଭାରି ଇଚ୍ଛା ହେଲା । ନାରାୟଣଙ୍କୁ ସାଥୀରେ ଧରି ସେ ମର୍ତ୍ତ୍ୟକୁ ଆସିଲେ । ଛଦ୍ମ ବେଶରେ । ବୁଢ଼ା-ବୁଢ଼ୀ ହୋଇ ।

ପାହାଡ଼ ଗଡ଼ାଣିରେ ଗାଁଟିଏ । ସେଇଠି ସେମାନେ ଅଟକିଲେ । ସେ ଗାଁରେ ଜଣେ ଧନୀ ବଣିକ ଥାଏ । ପ୍ରଥମେ ସେମାନେ ତା' ଘରକୁ ଗଲେ । କବାଟରେ ହାତ ମାରିଲେ । ଧନୀ ଲୋକଟି କବାଟ ଖୋଲିଲା । ବୁଢ଼ା-ବୁଢ଼ୀ ଦୁହିଁଙ୍କୁ ଦେଖି ସେ ଭାବିଲା—ଖାଇପିଇ ଆରାମରେ ରହିବା ମତଲବରେ ଏମାନେ ଆସିଛନ୍ତି । ଏମାନଙ୍କୁ ନ ତଡ଼ିଲେ, ଅନେକ ଯାଆଙ୍କ ପରି ଆସିବେ । ତାକୁ କାଙ୍ଗାଳ କରି ଦେବେ । ସେଥିପାଇଁ ସେ ଚକ୍କାର କରି ଶୀଘ୍ର ସେଠୁ ଚାଲିଯିବା ପାଇଁ ଆଦେଶ ଦେଲା । ବୁଢ଼ା-ବୁଢ଼ୀ ପ୍ରତି ଦୟା ଦେଖାଇବା ତ ଦୂରର କଥା, ସେଠି ତାଙ୍କୁ ଟିକିଏ ଠିଆ ବି କରାଇ ଦେଲା ନାହିଁ ।

ଧନୀ ଲୋକର ଘରକୁ ଲାଗି ଗୋଟିଏ ଗରିବ ଲୋକର କୁଡ଼ିଆ । ବୁଢ଼ା-ବୁଢ଼ୀ ନିରାଶରେ ବଣିକ ଘରୁ ଗଲେ । ଗରିବ କୁଡ଼ିଆ ଦୁଆର ବାଡ଼େଇଲେ । ଗରିବର ସ୍ତ୍ରୀଟି ଆସି କବାଟ ଖୋଲିଲା । ବୁଢ଼ା-ବୁଢ଼ୀଙ୍କୁ ଦେଖି ସେ ଖୁସି । ଲଣ୍ଠନଟିଏ ଆଣିଲା । ସେମାନଙ୍କୁ ନେଇ ତା'ର ଭଙ୍ଗା ଖଟରେ ବସାଇଲା । ସେତେବେଳକୁ ଘରେ ତ ତା'ର ବଡ଼ ଲୁଗାଟିଏ ବି ନଥାଏ । ଯେଉଁ ଚିରା ସିଲାଇ ଲୁଗା ଥିଲା, ତାକୁ ଆଣି ବୁଢ଼ା-ବୁଢ଼ୀଙ୍କୁ ବଦଳାଇବାକୁ ଦେଲା । ଲୁଗା ବଦଳିବା ପରେ ତାଙ୍କୁ ଯେ ଘରେ ଥିବା ବାଜରା ରୁଟି ଓ

ପାଳଙ୍ଗ ଶାଗ ଆଣି ଖାଇବାକୁ ଦେଲା । ଏତିକିବେଳେ ତା'ର ସ୍ୱାମୀ ଆସି ପହଞ୍ଚିଲା । ମୁଣ୍ଡରେ ତାର ଜାଳେଣୀ କାଠର ବୋଝ । ବର୍ଷାରେ ସେ ଜୁଡ଼ୁବୁଡ଼ୁ ଓଦା ହୋଇ ଯାଇଥିଲା । ବୁଢ଼ା-ବୁଢ଼ୀଙ୍କୁ ଦେଖି ସେ ଭାରି ଖୁସି । ସ୍ତ୍ରୀକୁ ତା'ର କହିଲା —"ଘରେ ଆମର ଦୁଇଟି ଭଙ୍ଗା ଖଟ । ଅତିଥିମାନେ ସେଥିରେ ଶୁଅନ୍ତୁ । ଆମେ ତଳେ ଶୋଇଯିବା ।" ତାର କଥା ରହିଲା ।

ସକାଳ ହେଲା । ବୁଢ଼ା-ବୁଢ଼ୀ ଯିବାକୁ ବାହାରିଲେ । ଗରିବ ଲୋକ ଓ ତାର ସ୍ତ୍ରୀ ସେମାନଙ୍କୁ ଖାଲି ପେଟରେ ସକାଳୁ ଛାଡ଼ିଲେ ନାହିଁ । ବୁଟ ଚୂନାରେ ଚପାଟି କରି ଖାଇବାକୁ ଦେଲେ । ବୁଢ଼ା-ବୁଢ଼ୀ ଦୁଇଜଣ ଆନନ୍ଦରେ ଚପାଟି ଲୁଣ ଓ କୋଳ ସାଥିରେ ଖାଇଲେ । ଏଥିରେ ଲକ୍ଷ୍ମୀ ଖୁବ୍ ସନ୍ତୁଷ୍ଟ । ଗଲାବେଳେ ଲକ୍ଷ୍ମୀ ଗରିବ ସ୍ତ୍ରୀକୁ କହିଲେ—"ମା'ଲୋ, ଆଜି ତୁ ଯାହା ଧରିବୁ ତା' ସୁନାରେ ପୂର୍ଣ୍ଣ ହୋଇଯିବ ।"

ସେମାନେ ବିଦା ହୋଇଗଲେ । ତା'ପରେ ଗରିବର ସ୍ତ୍ରୀ ଗତ ରାତିର ଅଁଇଠା ବାସନ ମାଜିବାକୁ ଗଲା । ସେ ବାସନ ମାଜି ସାରିବା ପରେ ଦେଖିଲା, ସେସବୁ ସୁନା ମୋହରରେ ପୂର୍ଣ୍ଣ ହୋଇ ଯାଇଛି । ଫଳରେ ଗରିବ ଆଉ ଗରିବ ହୋଇ ରହିଲା ନାହିଁ । ଧନୀ ପାଲଟିଗଲା ।

ଅଳ୍ପ ଦିନ ଭିତରେ ଭଙ୍ଗା କୁଡ଼ିଆ ଜାଗାରେ ସୁନ୍ଦର ଘରଟିଏ ଗଢ଼ି ଉଠିଲା । ଗରିବଟି ଗୋଟିଏ ବଡ଼ ଲୁଗା ଦୋକାନ କଲା । ତାର ଭାଗ୍ୟ ପରିବର୍ତ୍ତନ କଥା ଧନୀ ବଣିକ ସାହି ପଡ଼ିଶା ଦେଖିଲେ । ବଣିକର ତା' ପ୍ରତି ଭାରି ଈର୍ଷା ହେଲା । ଦିନେ ସେ ଗରିବ ଲୋକଟିକୁ ଡାକି କହିଲା ସେ ଧନୀ ହେଲା, ସେ ବିଷୟ ପଚାରିଲା । ଗରିବଟି ଭାରି ସରଳ । ନିର୍ବୋଧ । ସେ କିଛି ଲୁଚାଇଲା ନାହିଁ । ସବୁ

କଥା ବଣିକକୁ କହିଦେଲା ।

ବୁଢ଼ା-ବୁଢ଼ୀଙ୍କୁ ତଡ଼ି ଦେଇଥିବାରୁ ବଣିକଟି ନିଜକୁ ଖୁବ୍ ଧିକ୍କାରିଲା । ସେମାନଙ୍କର ଆସିବା ପାଇଁ ସେ ଅପେକ୍ଷା କରି ରହିଲା । ଠାକୁର ଠାକୁରାଣୀ ଏ କଥା ଜାଣିଲେ ।

ଆଉ ଦିନେ ବର୍ଷା ରାତିରେ ଭିକାରି ଓ ଭିକାରୁଣୀ ବେଶରେ ଠାକୁର ଓ ଠାକୁରାଣୀ ମର୍ତ୍ତ୍ୟକୁ ଆସିଲେ । ଧନୀ ବଣିକର କବାଟକୁ ବାଡ଼େଇଲେ । ବଣିକ ଓ ତା'ର ସ୍ତ୍ରୀ ଅପେକ୍ଷା କରିଥିଲେ । କବାଟ ଖୋଲି ଭିକାରି ଓ ଭିକାରୁଣୀଙ୍କୁ ଦେଖି ସେମାନଙ୍କୁ ପାଛୋଟି ନେଲେ । ଗୋଟିଏ ଭଙ୍ଗା ଖଟରେ ବସାଇଲେ । ଘରେ ଥିବା ପୁରୁଣା ସିଲେଇ ଲୁଗା ପିନ୍ଧିବାକୁ ଦେଲେ । ସେମାନଙ୍କୁ ବାଜରା ଅଟାର ରୁଟି ଓ କଳମ ଶାଗ ଖାଇବାକୁ ଦେଲେ । ବଣିକ ଓ ତାର ସ୍ତ୍ରୀ ତଳେ ଶୋଇଲେ । ଭଙ୍ଗା ଖଟରେ ଭିକାରି ଓ ଭିକାରୁଣୀଙ୍କୁ ଶୁଆଇଲେ । ସକାଳୁ ସେମାନେ ବାହାରିଲା ବେଳକୁ ବୁଟ ଚୂନାର ରୁଟି, ଲୁଣ ଓ କୋଳି ତାଙ୍କୁ ଖାଇବାକୁ ଦେଲେ । ଆଗରୁ ଗରିବ ଲୋକ ଓ ତା'ର ସ୍ତ୍ରୀ ଯାହା କରିଥିଲେ, ତା'ର ଅବିକଳ ନକଲ ବଣିକ ଓ ତା'ର ସ୍ତ୍ରୀ କଲେ । ସବୁ ଯନ୍ତ୍ରଚାଳିତ ପରି । ସେମାନଙ୍କ ମନରେ ଟିକିଏ ହେଲେ ଆନନ୍ଦ ନଥିଲା ।

ସକାଳକୁ ଗଲାବେଳେ ଠାକୁରାଣୀ ବଣିକର ସ୍ତ୍ରୀକୁ କହିଲେ—"ତୁମେ ଆମକୁ ଆଶ୍ରୟ ଦେଲ । ଖାଇବାକୁ ଦେଲ ସତ, କିନ୍ତୁ ଏଥିପାଇଁ ତମ ମନରେ ଆନନ୍ଦ ନ ଥିଲା । ତୁମେ ସ୍ୱତଃପ୍ରବୃତ୍ତ ହୋଇ କରିନାହଁ । କିଛି ପାଇବା ଆଶାରେ ପରକୁ ଅନୁକରଣ କଲ । ଆଜି ତୁମେ ଯେଉଁ କାମ ଆରମ୍ଭ କରିବ, ଦିନସାରା ସେଇଆ ଚାଲିବ । କମା ଅଟକିବ ନାହିଁ ।"

ସେମାନେ ଚାଲିଗଲେ । କେଉଁ ବାସନ କିଏ ମାଜିବ,

ସେଥିପାଇଁ ବଣିକ ଓ ତା' ସ୍ତ୍ରୀ ମଧ୍ୟରେ କଳି ହେଲା । ଶେଷକୁ ବଣିକର ସ୍ତ୍ରୀ ସଙ୍ଗୁଡ଼ି ବାସନ ଆଣି ସେଥିରେ ଲାଗିଥିବା ଗଲା ରାତର ଚରକାଣ୍ଟ ସଫା କରିବାକୁ ଆରମ୍ଭ କଲା । କିନ୍ତୁ ଆଶ୍ଚର୍ଯ୍ୟ ! ଯେତିକ ସେ ବାସି ଚରକାଣ୍ଟ ସଫା କରେ, ସେତିକ ଚରକାଣ୍ଟ ସେଥିରେ ଲାଗିଯାଏ । ସାରାଦିନ ଗଲା । ପାତ୍ରଟି ସଫା ହୋଇ ପାରିଲା ନାହିଁ ।

ସନ୍ଧ୍ୟା ବେଳକୁ ସ୍ୱାମୀ, ସ୍ତ୍ରୀ ବାସନ ସଫା କରି କରି ହାଲିଆ ହୋଇଗଲେ । ତଥାପି ମଧ୍ୟ ପାତ୍ରରେ ଚରକାଣ୍ଟ ଯେମିତି ଲାଗି ରହିଲା, ଜମା ଛାଡ଼ିଲା ନାହିଁ ।

ଲୋଭ ଓ ଈର୍ଷା କରିବାର ଫଳ ସେମାନଙ୍କୁ ମିଳିଗଲା ।



# ପରଶୁରାମ ଓ ସୁନା

ହିମାଚଳ ପ୍ରଦେଶରେ ଶିବ ଓ ପାର୍ବତୀଙ୍କର ବହୁ ଭକ୍ତ ଅଛନ୍ତି । ସେଥିପାଇଁ ସବୁ ଜାଗାରେ ଶିବ-ପାର୍ବତୀଙ୍କ ମନ୍ଦିର ଅଛି । ଏଠାକାର ପାହାଡ଼ିଆ ଲୋକଙ୍କ ମତରେ ପାର୍ବତୀ ଦୟାର ଅବତାର ।

ପ୍ରତିଦିନ ହର, ପାର୍ବତୀ ବୁଲିବାକୁ ଯାଆନ୍ତି । ବୁଲିସାରି ଘରକୁ ଫେରନ୍ତି । ଦିନକର କଥା । ଫେରିଲା ବାଟରେ ପାର୍ବତୀ ଶିବଙ୍କୁ କହିଲେ—"ପ୍ରଭୁ, ଆପଣ ଖୁବ୍ ନିଷ୍ଠୁର । ଆପଣ ମଣିଷର ଦୁଃଖ ଦେଖନ୍ତି । ତା'ର କରୁଣ ପ୍ରାର୍ଥନା ଆପଣଙ୍କର କାନରେ ପଡ଼େ । କିନ୍ତୁ କ୍ୱଚିତ୍ ଆପଣଙ୍କର ହୃଦୟ ତା' ପାଇଁ ତରଳେ ।"

ଏକଥା ଶୁଣି ଶିବ ପଚାରିଲେ—"କ'ଣ ହେଲା ? କିଏ

ଏପରି ଦୁଃଖ ଭୋଗି ମୋତେ ଡାକୁଛି ଯେ, ମୁଁ ତା' ଡାକ ଶୁଣୁ ନାହିଁ ?"

ପାର୍ବତୀ ଦେଖିଲେ ସୁଯୋଗ ଆସିଛି । ଏହା ହରାଇବାର କଥା ନୁହେଁ । ସେ ଗୋଟିଏ ଭିକାରୀକୁ ଦେଖାଇ କହିଲେ—"ଏ ଘରି ଗରିବ । ସବୁବେଳେ ଆପଣଙ୍କୁ ଡାକେ । ଆପଣଙ୍କର ଆଶ୍ରିତ ସେ । ଏହା ପାଇଁ ବ୍ୟବସ୍ଥା ହେଉ ।"

"ମଣିଷ ପୃଥିବୀରେ ଦୁଃଖରେ ଘାଣ୍ଟି ହେଉଛି । ଏହା ସତ୍ୟ । ସେଥିପାଇଁ ସେ ନିଜେ ହିଁ ଦାୟୀ । ଏହା ତାର ପୂର୍ବଜନ୍ମ କମ୍ବା ଏଇ ଜନ୍ମର କର୍ମଫଳ । ତାହା ହିଁ ସେ ଭୋଗୁଛି ।" ଶିବ ପାର୍ବତୀଙ୍କୁ ବୁଝାଇ କହିଲେ । କିନ୍ତୁ ପାର୍ବତୀ ଶିବଙ୍କର କୈଫିୟତ ଗ୍ରହଣ କରିବାକୁ ନାରାଜ । ଏଇ ଭିକାରୀକୁ ସାହାଯ୍ୟ କରିବାକୁ ହେବ । ଏହାହିଁ ତାଙ୍କର ଜିଦ୍ ।

ଶିବ ପାର୍ବତୀଙ୍କ ଜିଦ୍ ଦେଖି ଟିକିଏ ମୁରୁକି ହସିଲେ । ଶିବ ସୁନାର ଇଟାଟିଏ ଭିକାରୀ ଆଗରେ ପକାଇ ଦେଲେ ।

ଭିକାରୀଟି ଭିକ ମାଗି ମାଗି ଫେରୁଥାଏ । କାନ୍ଧରେ ତା'ର ଗୋଟିଏ ଅଖା । ସେଥିରେ ସେ ଭିକ ରଖିଛି । ତାକୁ ଧରି ସେ ଘରକୁ ଆସୁଥିଲା । ସେ ଯେ ଗରିବ, ମୁଣ୍ଡରେ ତା'ର ସେଇ ଚିନ୍ତା । ସେ ଭାବୁଥିଲା—'ଏଇନେ ବୟସ ଅଛି । ଭିକ ମାଗି ଯେନ ତେନ ପ୍ରକାରେଣ ଚଳିଯାଉଛି । କାଲିକୁ ସେ ବୁଢ଼ା ହୋଇଯିବ । ଆଖିକୁ ତା'ର ଦେଖାଯିବ ନାହିଁ । ତାକୁ ଅତି ଦୁଃଖରେ କାଳ କାଟିବାକୁ ହିଁ ହେବ । ସେ ଅନ୍ଧ ହେଲେ କିପରି ଚାଲିବ, ସେଥିପାଇଁ ଆଜିଠାରୁ ଅଭ୍ୟସ୍ତ ହେଲେ, ସେତେବେଳେ ତାକୁ ବେଶୀ କଷ୍ଟ ହେବ ନାହିଁ ।'

ଏକଥା ଯେମିତି ତା' ମୁଣ୍ଡକୁ ଆସିଛି, ସେ ଆଖି ବନ୍ଦକଲା । ଆଗକୁ ଅଣ୍ଡାଳି ଅଣ୍ଡାଳି ହୋଇ ଚାଲିଲା । ତା' ଆଗରେ 'ପଡ଼ିଥିବା ସୁନା

ଇଟାକୁ ସେ ଦେଖିପାରିଲା ନାହିଁ । ଆଗକୁ ସେ ଚାଲିଗଲା ।

ଶିବ ଓ ପାର୍ବତୀ ଏ ଦୃଶ୍ୟ ଦେଖୁଥିଲେ । ସୁନା ଇଟା ପାର ହୋଇ ଭିକାରୀଟି ଚାଲିଯିବା ପରେ ଶିବ ପାର୍ବତୀଙ୍କୁ କହିଲେ— "ଦେଖ ସୁନା ଇଟା ଆଗରେ ପଡ଼ିଛି । ତମ ଭିକାରୀ ସୁନା ଇଟାକୁ ଅନାଇଲା ନାହିଁ । ବହୁ ସୁଯୋଗ ଲୋକ ପାଖକୁ ଆସେ । ସେ ତାର ସୁଯୋଗ ନିଏ ନାହିଁ । ସେ ତା' ଭାଗ୍ୟର ଫଳ । ତୁମେ କ'ଣ ଏହା ଅନୁଭବ କଲ ନାହିଁ ?"

ଭିକାରୀ ପ୍ରତି ତାଙ୍କର ବହୁତ ଦୟା । ସୁଯୋଗ ହାତଆଗକୁ ଆସିଲା, ସେ ତା'ର ସୁବିଧା ନେଲା ନାହିଁ । ସେଥିପାଇଁ ପାର୍ବତୀଙ୍କ ମନରେ ଅଶେଷ ଦୁଃଖ । ତଥାପି ଶିବଙ୍କ କଥାରେ ପାର୍ବତୀ ରାଜି ହେବା ଛଡ଼ା ତାଙ୍କର ଅନ୍ୟ ଉପାୟ ନଥିଲା ।



# ଭଗବାନଙ୍କ କୃପାରେ ବିଶ୍ୱାସ ରଖ

ବହୁଦିନ ତଳେ ଦୁଇଟି ଭାଇ ଥିଲେ । ସେମାନେ ହେଲେ ହରିରାମ ଓ ମୋତିରାମ । ଉଭୟେ ବିବାହିତ । ହରିରାମ ବଡ଼ଭାଇ । ସେ ଖୁବ୍ ପରିଶ୍ରମୀ ଓ ଅଧ୍ୟବସାୟୀ । ମୋତିରାମ ଅଳସୁଆ । ସେ କେବେହେଲେ ପଦାକୁ ଯାଏ ନାହିଁ । ତା'ର ଏ ଗୁଣ ଯୋଗୁ ତା' ସ୍ତ୍ରୀ ତା' ଉପରେ ରାଗେ । ବିରକ୍ତ ହୁଏ । ସ୍ତ୍ରୀ ଗାଳି ଦେଲେ ସେ କହେ—"ସବୁ ଭଗବାନଙ୍କ କୃପା । ତାଙ୍କ କୃପା ହେଲେ ଘରେ ବସି ମଧ୍ୟ ଧନରତ୍ନରେ ଘର ପୂରିଯିବ । ଏମିତି କି ଚାଳ କଣାହୋଇ ଧନ ଅଜାଡ଼ି ହୋଇଯିବ ।" ମୋତିରାମର ସ୍ତ୍ରୀ ଏଥିରେ ବିଶ୍ୱାସ ନଥାଏ । ମୋତିରାମକୁ ବଦଳାଇବାକୁ ତାର ଉଦ୍ୟମ ବହୁତ ।

ସବୁ ବିଫଳ । ଯେତେ ବୁଝିଲେ ବି ମୋହନରାମ ଟଂକେ ନାହିଁ । ଦିନେ ମୋହନରାମର ସ୍ତ୍ରୀ ଜଙ୍ଗଲକୁ ଗୋରୁ ଚରାଇବାକୁ ଯାଇଥିଲା । ସେଠାରେ ସେ ଗୋଟିଏ ମାଠିଆ ପୋତା ହୋଇଥିବାର ଦେଖିଲା । ତା ମୁହଁ ଖୋଲି ଜାଣିଲା ଯେ ମାଠିଆଟି ସୁନା ମୋହରରେ ପୂର୍ଣ୍ଣ । ଆଉ ଖୋଲିଲା ନାହିଁ । ଯେମିତି ଥିଲା ସେମିତି ରଖିଦେଲା । କେହି ଯେମିତି ଏହା ଜାଣିପାରିବେ ନାହିଁ ସେଥିପାଇଁ ସେ ମାଠିଆ ମୁହଁରେ ପଙ୍କବୋଳ ଘାସ ଘୋଡ଼ାଇ ଦେଲା । ସେ ଘରକୁ ଫେରିଲା । ସବୁକଥା ତାର ସ୍ୱାମୀକୁ କହିଲା । ସେହି ରାତିରେ ଜଙ୍ଗଲକୁ ଯାଇ ସୁନାପୂର୍ଣ୍ଣ ମାଠିଆ ଆଣିବା ପାଇଁ ତା'ର ସ୍ୱାମୀକୁ ଅନୁରୋଧ । ମୋହନରାମ ତ ଅଳସୁଆ । ସେ କ'ଣ ସ୍ତ୍ରୀ କଥାରେ ରାଜି ହେବ ? ସେ ଜଙ୍ଗଲକୁ ଗଲାନାହିଁ । ବରଂ କହିଲା—"ଭଗବାନଙ୍କର ଦୟା ହେଲେ ଧନସବୁ ଘରକୁ ଆସିବ । ସେ ଚୋରଭଳି ଧନ ଆଣିବାକୁ ଯିବ ନାହିଁ ।" ମୋହନରାମ ସ୍ତ୍ରୀର ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା । ଶେଷକୁ ସେ ସ୍ଥିର କଲା ଯେ ଏକଥା ତା'ର ଯାଆକୁ କହିବ । ତାକୁ ନେଇ ମାଠିଆ ଆଣିବ । ଖାଲି ସେତିକି ନୁହେଁ, ସାଥେ ସାଥେ ସେ ଯାଇ ତା' ଯାଆକୁ ସବୁକଥା କହିଦେଲା । ତା' ଯାଆଟି ଭାରି ଲୋଭୀ । ଚତୁରୀ ବି । ସମସ୍ତ ସୁନା ସେ ତାର ଅକ୍ତିଆର କରିବାକୁ ଚାହେଁ । ମୋହନରାମ ସ୍ତ୍ରୀକୁ କିଛି ଅଂଶ ଦେବାକୁ ରାଜି ନୁହଁ । ସେଥିପାଇଁ ମୋହନରାମ ସ୍ତ୍ରୀ ସାଥିରେ ଯିବାକୁ ସେ ରାଜି ହେଲା ନାହିଁ । ବରଂ କହିଲା—"ଜଙ୍ଗଲରେ ବିପଦ ଅଛି । ଧନପାଇଁ କିଏ ଜଙ୍ଗଲରେ ପ୍ରାଣ ଦେବ ?" ମୋହନରାମ ସ୍ତ୍ରୀ ନିରାଶରେ ଘରକୁ ଗଲା । ନିଜ ଭାଗ୍ୟକୁ ନିନ୍ଦାକରି ସେ ଶୋଇଗଲା । ହରିରାମ ସ୍ତ୍ରୀ ତା' ସ୍ୱାମୀକୁ ଉଠାଇଲା । ସାଥୀହୋଇ ମାଠିଆ ଯେଉଁଠି ପୋତା ହୋଇଥିଲା, ସେମାନେ ସେଇଠାରେ ପହଞ୍ଚିଲେ । ହରିରାମ ଘାସ ବାହାର କଲା ।

ମାଠିଆ ଖୋଳିବାକୁ ଆରମ୍ଭ କଲା । ସେଠାରେ କଙ୍କଡ଼ା ବିଛା ଥିଲେ । ହରିରାମକୁ ଓ ତା'ର ସ୍ତ୍ରୀକୁ କାମୁଡ଼ିଲେ । ସେମାନେ ଭାବିଲେ ଏସବୁ ମୋତିରାମ ସ୍ତ୍ରୀର କାରସାଦି । ତାଙ୍କୁ ଅପଦସ୍ଥ କରିବାର ଏହା ଏକ ବ୍ୟବସ୍ଥା । ସେମାନେ ଭାବିଲେ ଯେ ମାଠିଆଟିରେ କଙ୍କଡ଼ା ବିଛା ତ ପୂରିରହିଛି । ମୋତିରାମ ସ୍ତ୍ରୀ ସେମାନଙ୍କୁ ଯେଉଁ ହଇରାଣ କଲା, ସେମାନେ ତାର ପ୍ରତିଶୋଧ ନେବେ । ସେଥିପାଇଁ ସେମାନେ ମାଠିଆ ମୁହଁଟିକୁ ଭଲ ଭାବରେ ବନ୍ଦ କଲେ । ତାକୁ ନେଇ ଚାଲିଲେ । କିନ୍ତୁ କଙ୍କଡ଼ା ବିଛାସବୁ ବାହାରେ ଥିଲେ । ସେମାନେ ସେହି ଜାଗାରେ ରହିଗଲେ । ହରିରାମ ଓ ତାର ସ୍ତ୍ରୀ ଗଲେ । ମୋତିରାମ ଚାଳ କଣାକରି ମାଠିଆ ଓଲଟାଇ ଦେଲେ । ମାଠିଆରେ ଥିବା ସମସ୍ତ ସୁନା ମୋହର ଘରେ ବିଛୁଡ଼ି ହୋଇ ପଡ଼ିଲା । ମୋତିରାମର ନିଦ ଭାଙ୍ଗିଗଲା । ସେ ତାର ସ୍ତ୍ରୀକୁ ଉଠାଇଲା । ସେ ଆଲୁଅ ଲଗାଇ ଦେଖେ ଯେ ଘରଯାକ ସୁନା ମୋହର ବିଛୁଡ଼ି ହୋଇ ପଡ଼ିଛି । ମୋତିରାମ ତା' ସ୍ତ୍ରୀକୁ କହିଲା – "ଦେଖ ଭଗବାନଙ୍କର କୃପାଥିଲେ ଘର ଭିତରେ ସୁନା ମୋହର ଆସି ପଡ଼େ ।" ●

# ମହାରାଜା ନିଜେହିଁ ଚତୁର୍ଥ ବୋକା

ଥରେ ଜଣେ ରାଜା ତାଙ୍କ ମନ୍ତ୍ରୀଙ୍କୁ କହିଲେ—"ତୁମେ ରାଜ୍ୟସାରା ବୁଲ । ଆମ ରାଜ୍ୟରୁ ଚାରିଜଣ ବୋକାଙ୍କୁ ଧରିକରି ଆଣ ।" ମନ୍ତ୍ରୀ ବୋକା ଖୋଜିବାକୁ ବାହାରି ପଡ଼ିଲେ । ବାଟରେ ଯାଉ ଯାଉ ସେ ଦେଖିଲେ ଯେ ଜଣେ ଲୋକ ଘୋଡ଼ାରେ ଯାଉଛି । ତା' ମୁଣ୍ଡରେ ଗୋଟିଏ ବୋଝ । ତାହା ବେଶ୍ ଭାରି । ମନ୍ତ୍ରୀଙ୍କର ହୃଦ୍‌ବୋଧ ହେଲା, ଏ ଗୋଟିଏ ବୋକା । ତା' ନ ହୋଇଥିଲେ ସେ

ବୋଝଟିକୁ ଘୋଡ଼ା ଉପରେ ଥୋଇ ଥା'ନ୍ତା । ବେଶ୍ ଆରାମରେ ନିଜେ ମୁଣ୍ଡାଇ ନଥାନ୍ତା । ମନ୍ତ୍ରୀ ତାକୁ ତାଙ୍କ ସାଥିରେ ଆସିବାକୁ ଆଦେଶ ଦେଲେ ।

ତା'ପରେ ମନ୍ତ୍ରୀ ପୁଣି ଚାଲିଲେ । କିଛିବାଟ ଗଲାପରେ ସେ ଦେଖିଲେ ଜଣେ ଲୋକ ମିଠେଇ ସବୁ ରାସ୍ତାରେ ଲୋକଙ୍କୁ ବାଣ୍ଟୁଛି । ମନ୍ତ୍ରୀ ତାକୁ ପଚାରିଲେ—"ଏମିତି ମିଠାଇ କାହିଁକି ଲୋକଙ୍କୁ ବାଣ୍ଟୁଛୁ ?" ଲୋକଟି ଉତ୍ତର ଦେଲା—"ମୁଁ ମୋ ସ୍ତ୍ରୀକୁ ଛାଡ଼ପତ୍ର ଦେଇଥିଲି । ସେ ଅନ୍ୟତ୍ର ବିବାହ କଲା । ତା'ର ପୁଅଟିଏ ହୋଇଛି । ମୁଁ ଭାରି ଖୁସି । ସେଥିପାଇଁ ମିଠାଇ ସବୁ ଲୋକଙ୍କୁ ବାଣ୍ଟୁଛି ।" ମନ୍ତ୍ରୀଙ୍କ ମତରେ ଏ ହେଲା ଦ୍ୱିତୀୟ ବୋକା । ମନ୍ତ୍ରୀ ତାକୁ ତାଙ୍କ ସାଥିରେ ଆସିବାକୁ ଆଦେଶ ଦେଲେ ।

ମନ୍ତ୍ରୀ ରାଜ ଦରବାରରେ ପହଞ୍ଚିଲେ । ସାଥିରେ ବୋକା ଦୁଇଜଣ ଚାଲିଥା'ନ୍ତି । ସେମାନଙ୍କୁ ନେଇ ରାଜାଙ୍କ ପାଖରେ ହାଜର କଲେ ।

ସେମାନଙ୍କୁ ଦେଖି ରାଜା ମନ୍ତ୍ରୀଙ୍କୁ ପଚାରିଲେ—"ତୁମେ ଏ ଦୁଇଜଣଙ୍କୁ କିପରି ବୋକା ବୋଲି ଚିହ୍ନିଲ ? ତାର ବିବରଣୀ ଦିଅ ।" ମନ୍ତ୍ରୀ ସମସ୍ତ କଥା କହିଲେ । ଏହା ଶୁଣି ରାଜା ମହାଖୁସି । ତା'ପରେ ରାଜା ମନ୍ତ୍ରୀଙ୍କୁ ପଚାରିଲେ—"ମୁଁ ତୁମକୁ ଚାରୋଟି ବୋକା ଆଣିବାକୁ କହିଥିଲି । ତୁମେ ଦୁଇଟି ବୋକା ଆଣିଲ, ଆଉ ଦୁଇଟି ବୋକା ଗଲେ କୁଆଡ଼େ ?" ମନ୍ତ୍ରୀ ବିନୟ ହୋଇ କହିଲେ—"ମହାରାଜ, ମୋର କିଛି କାମ ନାହିଁ ଯେ ବୋକା ଓ ନିର୍ବୋଧଙ୍କୁ ଖୋଜିବାରେ ମୁଁ ମୋର ସମୟ ନଷ୍ଟ କରୁଛି । ତେଣୁ ମହାରାଜ ମୁଁ ହେଉଛି ତୃତୀୟ ବୋକା ।" ରାଜା ପଚାରିଲେ—"ଚତୁର୍ଥ ବୋକା ଗଲା କୁଆଡ଼େ ? ମୋତେ ସେ ବିଷୟ ଜଣାଅ ।"

ମନ୍ତ୍ରୀ ନମ୍ରତାର ସହ କହିଲେ --"ମହାରାଜ, ମୋତେ କ୍ଷମା କରନ୍ତୁ । ମୁଣ୍ଡ ରହିଲେ ଭୁଣ୍ଡ କଥା କହିବ ।" ରାଜା ମନ୍ତ୍ରୀଙ୍କୁ ଉତ୍ତର ଦେବାପାଇଁ ବାରମ୍ବାର ବାଧ କଲେ । ମନ୍ତ୍ରୀଙ୍କ ସେହି ଉତ୍ତର—"ମୋତେ ଅଭୟ ମିଳୁ ।" ରାଜା ଅଭୟ ଦେବାରୁ ମନ୍ତ୍ରୀ କହିଲେ—"ହଜୁର ହିଁ ଚତୁର୍ଥ ବୋକା ।"

"ମୁଁ ଯେ କାହିଁକି ଚତୁର୍ଥ ବୋକା, ତା'ର କାରଣ ମୋତେ ଜାଣିବାକୁ ଦିଅ ।"

ମନ୍ତ୍ରୀ କହିଲେ—"ମହାରାଜ, ଦେଶ ଶାସନ ଆପଣଙ୍କର ଦାୟିତ୍ୱ । ଏଥିପାଇଁ ବିଜ୍ଞ ଲୋକ ଦରକାର । ସେମାନଙ୍କୁ ହଜୁର ଖୋଜୁ ନାହାନ୍ତି । ହଜୁରଙ୍କର ମୂଲ୍ୟବାନ ସମୟ ନଷ୍ଟକରି ବୋକାଙ୍କୁ ଖୋଜୁଛନ୍ତି । ସେମାନଙ୍କ ବିଷୟରେ ଜାଣିବାକୁ ଚାହୁଁଛନ୍ତି । ଏହା ବୁଦ୍ଧିମାନ ବ୍ୟକ୍ତିର କାମ ନୁହଁ, ବୋକାର କାମ ।" ରାଜା ମନ୍ତ୍ରୀଙ୍କର ବିଜ୍ଞତାରେ ମୁଗ୍‌ଧ । ନିଜ କର୍ମପାଇଁ ଅନୁତପ୍ତ । ମନ୍ତ୍ରୀଙ୍କ ବୁଦ୍ଧି ପ୍ରଖର । ତାଙ୍କ ହୃଦ୍‌ବୋଧ ପାଇଁ କଥାଟା ଯେପରି ପରିବେଷଣ କଲେ ସେଥିପାଇଁ ରାଜାଙ୍କ ଦ୍ୱାରା ପୁରସ୍କୃତ ଓ ସମ୍ମାନିତ ହେଲେ ।

卐

# ଧୈର୍ଯ୍ୟହୀନ ମହାଜନ

ଗୋଟିଏ ମହାଜନ ଥିଲା । ସେ ଋଣ ଦିଏ । ସୁଧ ସହିତ ମୂଳ ଆଦାୟ କରେ । ତାହାହିଁ ତା' ଜୀବନର ଲକ୍ଷ୍ୟ । ତାର ଗୋଟିଏ ଖାତକ ଥିଲା । ସେ ମହାଜନଠାରୁ ଦୁଇଶହ ଟଙ୍କା କରଜ ନେଲା ତାହା ପୁଣି ଶହେଟଙ୍କା ସୁଧରେ । ଖାତକଟି ତାର ଜବାବ ରଖି ପାରିଲା ନାହିଁ । ସୁଧ ସହିତ ମୂଳ ଶୁଝିବାକୁ ସେ ଅକ୍ଷମ । ସେଥିପାଇଁ ସେ ଧରାଛୁଆଁ ଦେଲା ନାହିଁ । ଋଣ ଆଦାୟ କରିବାପାଇଁ ମହାଜନ

ଖାତକ ଘରକୁ ଗଲା । ସେତେବେଳକୁ ଖାତକ ଘରେ ନଥିଲା । ମହାଜନ ଦେଖିଲା—ଖାଲି ସେମିତି ଫେରି ଆସିବାଟା ତାର ଉଚିତ ହେବ ନାହିଁ । ଖାତକ ଘରେ ତାର ସ୍ତ୍ରୀ ଅଛି, ତାକୁ ଋଣ ବିଷୟରେ ଜଣାଇ ଦେବ । ତେଣୁ ସେ ଖାତକର ସ୍ତ୍ରୀକୁ ଡାକିଲା । ଖାତକର ସ୍ତ୍ରୀ ଘୋର ଧୂର୍ତ୍ତ । ସେ ଭଣ୍ଡାର ଘରକୁ ଗଲା । ଗୁରେଟି ପାଣିକଖାରୁ ଧରି ଆସିଲା । ସେ ମହାଜନଙ୍କୁ କହିଲା—"ମହାଶୟ, ଏ ଗୁରେଟି ଆମ ଘୋଡ଼ାର ଡ଼ିମ୍ବ । ଅଣ୍ଡା ଫୁଟିଲେ ଘୋଡ଼ା ଛୁଆ ବାହାରିବେ । ସେ ସବୁ ବହୁତ ଦରରେ ବିକି ହେବ । ଘୋଡ଼ା ଛୁଆ ବିକା ଆପଣଙ୍କ ଟଙ୍କା ପରିଶୋଧ କରିବୁ ।" ମହାଜନଟି ଚଡ଼ା ଗଳାରେ କହିଲା—"ମୁଁ ବହୁଦିନ ଅପେକ୍ଷା କଲିଣି । ତୁମେ ତ ଋଣ ଶୁଝୁ ନାହଁ । ମୋତେ ଘୋଡ଼ା ଡ଼ିମ୍ବ ଦେଇ ଦିଅ । ଫଳରେ ତୁମ ଋଣ ଶୁଝିଯିବ ।" ଖାତକର ସ୍ତ୍ରୀ ଛଳନା କରି କହିଲା—"ଏ ଗୁରଟି ଅଣ୍ଡା ଫୁଟିଲେ ଗୁରେଟି ଘୋଡ଼ା ଛୁଆ ବାହାରିବେ । ପ୍ରତ୍ୟେକ ପାଞ୍ଚଶହ ଟଙ୍କାରେ ବିକି ହେବ । ଆମେ ଦୁଇ ହଜାର ଟଙ୍କା ପାଇବୁ । ଦୁଇଶହ ଟଙ୍କା ପାଇଁ ଆମ କେମିତି ତୁମକୁ ଗୁରେଟି ଘୋଡ଼ା ଡ଼ିମ୍ବ ଦେବୁ ? ଏହା କ'ଣ ସମ୍ଭବପର କଥା ।" କିନ୍ତୁ ମହାଜନ ନଛୋଡ଼ ବନ୍ଧା । ଘୋଡ଼ା ଡ଼ିମ୍ବ ବୋଲି ପାଣିକଖାରୁ ଗୁରେଟି ନେବାକୁ ତା'ର ଜିଦ । ଶେଷକୁ ସ୍ତ୍ରୀ ଲୋକଟି ରାଜି ହେଲା । ଗୁରେଟି ପାଣିକଖାରୁ ମହାଜନକୁ ଦେଇ ଦେଲା । ଖାତକର ସ୍ତ୍ରୀ ମହାଜନକୁ ଅନୁନୟ ସହ କହିଲା—"ଆପଣେ ଖୁବ୍ ହୁସିଆରରେ ଥିବେ । ପାହାଡ଼ ଚଢ଼ିଲା ବେଳେ ଅଣ୍ଡାସବୁ ଯଦି ଫାଟିଗଲେ ସେଥିରୁ ଘୋଡ଼ା ଛୁଆ ବାହାରି ପଳାଇବେ ।"

ମହାଜନ ତା' ଘରକୁ ଯିବାକୁ ହେଲେ ପାହାଡ଼ ଚଢ଼ିବାକୁ ହେବ । ବାଟରେ ଯାଉ ଯାଉ ତା'ର ଗୋଡ଼ ଖସି ଗଲା । ପାଣି-

କଖାରୁ ଗୁରେଟି ଗଡ଼ଗଡ଼ି ତଳକୁ ଗଳିଗଲା । ପାହାଡ଼ ଉପରେ ତ ମହାଜନ । ସେ ସେଇଠାରୁ ଦେଖିଲା ଯେ ତଳେ ହରିଣ ଛୁଆ ଗୁରେଟି ଦୌଡ଼ୁଛନ୍ତି । ମହାଜନର ବିଶ୍ୱାସ ଘୋଡ଼ା ଡିମ୍ବରୁ ଘୋଡ଼ା ଛୁଆ ବାହାରି ପଳାଇଲେ । ଖାତକର ସ୍ତ୍ରୀ ମହାଜନକୁ ବୋକା ବନାଇ ଦେଲା । କିନ୍ତୁ ମହାଜନ ଏହା ଜାଣିବାକୁ ଅକ୍ଷମ । ●

## କାଫୁ ଚୌହାନ

ଏକଦା ଗଡ଼ୱାଲରେ ଅଜୟପାଲ ରାଜୁତି କରୁଥିଲେ । ତାଙ୍କର ଅଭିଷେକ ଉତ୍ସବରେ ରାଜ୍ୟର ସବୁ ସମ୍ଭ୍ରାନ୍ତମାନେ, କର ରାଜ୍ୟର ମୁଖ୍ୟମାନେ ଉପସ୍ଥିତ ହୋଇ ତାଙ୍କୁ ସମ୍ମାନ ଦେଲେ । କିନ୍ତୁ କାଫୁ ଚୌହାନ ତାର ବ୍ୟତିକ୍ରମ । ସେ ଉପଗଡ଼ର ଅଧିକାରୀ । ସେ ଅଭିଷେକ ଉତ୍ସବକୁ ଗଲେନାହିଁ । ରାଜା ଅଜୟ ପାଲ ତାଙ୍କୁ ଡକାଇ ପଠାଇଲେ । କିନ୍ତୁ ସେ ତାଙ୍କୁ ସମ୍ମାନ ଦେବାକୁ ମନା କରିଦେଲେ । ସେ କହିଲେ—"ପଶୁ ଭିତରେ ସିଂହ ଓ ପକ୍ଷୀ ଭିତରେ ଶାଗୁଣା କାହାକୁ ସମ୍ମାନ ଦିଅନ୍ତି ନାହିଁ ।" ଏହା ଶୁଣି ରାଜା ତାଙ୍କୁ ବାରମ୍ବାର ସାବଧାନ କରାଇ ଦେବା ସତ୍ତ୍ୱେ ସେ ଖାତିର କଲେ ନାହିଁ । ରାଜା ତାଙ୍କ ରାଜ୍ୟ ଅବରୋଧ କରାଇବା ପାଇଁ ଖବର ପଠାଇଲେ । ସେ ଉତ୍ତର ଦେଲେ ଅଜୟ ପାଲଙ୍କ ରାଜଧାନୀ ଶ୍ରୀନଗରକୁ ଆକ୍ରମଣ କରି ଉଆସ ଓ ବଗିଚା ଧ୍ୱଂସ କରିଦେବେ । ଏ ପ୍ରକାର ଯୁଦ୍ଧର ସମ୍ମୁଖୀନ ହେବା ଔଦ୍ଧତ୍ୟ ଦେଖି ଅଜୟପାଲ ବହୁ ସୈନ୍ୟ ନେଇ କାଫୁଙ୍କ ରାଜ୍ୟ ଆକ୍ରମଣ କଲେ । ଉପଗଡ଼ର ଦୁର୍ଗ ବିରାଟ । ପାଖରେ ଗଙ୍ଗାନଦୀ ବୋହିଯାଉଛି । ଅଜୟପାଲ ତାଙ୍କ ସୈନ୍ୟଙ୍କର ଡେରା ଦୁର୍ଗ ପଛପଟେ ଗଙ୍ଗା କୂଳରେ ପକାଇଲେ । କାଫୁଙ୍କର ମା' ଝରକା ବାଟେ ନଦୀ ଆରପଟେ ସୈନ୍ୟ ସମାବେଶ ଦେଖିଲେ । ଏହାର

ଉଦ୍ଦେଶ୍ୟ କ'ଣ ? ସେ କାପୁଠାରୁ ଜାଣିବାକୁ ଚାହିଁଲେ । କାପୁ କହିଲେ—"ଏହା ଅଜୟପାଳଙ୍କ ସୈନ୍ୟବାହିନୀ । ତାଙ୍କୁ ସମ୍ମାନ ଦେବାପାଇଁ ସେ ମନାକରି ଦେଇଛନ୍ତି । ପ୍ରତିଶୋଧ ପାଇଁ ଅଜୟ-ପାଳ ସୈନ୍ୟବାହିନୀ ସହ ଉପସ୍ଥିତ ହୋଇଛନ୍ତି ।" ଏକଥା ଶୁଣି କାପୁଙ୍କ ମା' ଦୁଃଖିତ, ମର୍ମାହତ । ତାଙ୍କର ଉପଦେଶ ହେଲା— "ପୁଅରେ ତୁ ଏକା ଏ ବିରାଟ ସୈନ୍ୟବାହିନୀ ସହିତ ମୁକାବିଲା କରିପାରିବୁ ନାହିଁ । ମୁଁ ଜାଣେ ସେ ତୋତେ କ୍ଷମା ଦେବେ ।" କାପୁ କହିଲେ-"ମା' ମୁଁ କ୍ଷମା ମାଗିପାରିବି ନାହିଁ । ମୋ ଦେହରେ କ୍ଷତ୍ରିୟ ରକ୍ତ ପ୍ରବାହିତ । ମୋର ଭୀରୁତା ପାଇଁ ସ୍ୱର୍ଗରୁ ମୋ ପିତା ଅଭିଶାପ ଦେବେ ।" ଏହା କହି କାପୁ ନିଜେ ଦୁର୍ଗ ବାହାରକୁ ଆସିଲେ । ତାଙ୍କ ଦୁର୍ଗରୁ ନଦୀ ଆରପଟ ପର୍ଯ୍ୟନ୍ତ ଯେଉଁ ଦଉଡ଼ିଝୁଲ ସେତୁ ଥିଲା, ତାକୁ ସେ କାଟିଦେଲେ । ପରଦିନ ଅଜୟ ପାଳଙ୍କ ସୈନ୍ୟମାନେ ଦେଖିଲେ ଯେ ଝୁଲସେତୁ ଆଉ ନାହିଁ । ସେମାନେ ଫେରିଯାଇ ଅଜୟ ପାଳଙ୍କୁ ଏ ଖବର ଦେଲେ । ଅଜୟପାଳ ଆଦେଶ ଦେଲେ—"ଆଉ ଗୋଟିଏ ଝୁଲସେତୁ ତିଆରି କରି ଦୁର୍ଗକୁ ଅବରୋଧ କର ।" ଏହା ଦେଖି କାପୁର ମା' ଖୁବ୍ ଡରିଗଲେ । ପୁଅକୁ ଅଜୟପାଳଙ୍କ ନିକଟକୁ ଯାଇ କ୍ଷମାଭିକ୍ଷା ମାଗିବାକୁ ପ୍ରବର୍ତ୍ତାଇଲେ । କାପୁ କହିଲେ--"ମୋ ଗଣ୍ଡିରୁ ମୁଣ୍ଡ ଅଲଗା ହୋଇଯାଇପାରେ, କିନ୍ତୁ ମୁଁ କ୍ଷମାଭିକ୍ଷା ମାଗିପାରିବି ନାହିଁ ।"

କାପୁ ତାଙ୍କ ସାଞ୍ଜୁ ପିନ୍ଧିଲେ । ଯୁଦ୍ଧ ଘୋଡ଼ାରେ ଚଢ଼ି ଦୁର୍ଗ ବାହାରକୁ ଆସି ଶତ୍ରୁକୁ ଆକ୍ରମଣ କଲେ । ଏକୁଟିଆ ସେ ବିଶାଳ ସୈନ୍ୟବାହିନୀର ସମ୍ମୁଖୀନ ହେଲେ । ବହୁତ ସୈନ୍ୟ ନିହତ ହେଲେ, ରକ୍ତର ନଦୀ ଛୁଟିଲା । ଯୁଦ୍ଧକ୍ଷେତ୍ର ମଶାଣିରେ ପରିଣତ ହୋଇଗଲା । କାପୁ ଅଜୟ ପାଳଙ୍କ ସୈନ୍ୟବାହିନୀକୁ ବିନାଶ କରି

ନଦୀ କୂଳରେ ବିଶ୍ରାମ ନେଲେ । କାଫୁର ମା' ରକ୍ତ ପ୍ରବାହ ଓ ଶବମାନ ଦେଖି ଭାବିଲେ—କାଫୁର ମଧ୍ୟ ଏହି ଦଶା ହୋଇଥିବ । ସେ ନିଜେ ଶତ୍ରୁ ହାତରେ ପଡ଼ିବାକୁ ଚାହୁଁ ନଥିଲେ । ତେଣୁ ସେ ଦୁର୍ଗରେ ନିଆଁ ଲଗାଇ ଦେଲେ । ସେହି ନିଆଁରେ ତାଙ୍କ ପରିବାର ସହ ସେ ନିଜେ ପୋଡ଼ି ନିଶ୍ଚିହ୍ନ ହୋଇଗଲେ । କାଫୁ ଜୟଯୁକ୍ତ ହୋଇ ଯେତେବେଳେ ମା' ପାଖକୁ ଆସିଲେ, ସେ ଦୁର୍ଗ ଜଳୁଥିବାର ଦେଖି ସ୍ତମ୍ଭୀଭୂତ ଓ ନିର୍ବାକ ହୋଇଗଲେ । ଅଜୟପାଳଙ୍କ ଲୋକ ସେଇବାଟେ ଯାଉଥିଲେ । ସେମାନେ କାଫୁଙ୍କ ଅବସ୍ଥା ଦେଖିଲେ । ତାହା ସେମାନେ ଅଜୟପାଳଙ୍କୁ ଜଣାଇ ଦେଲେ । ଏଥିରେ ଅଜୟପାଳ ଆନନ୍ଦିତ । ନିଜେ ସେ ଏହା ସ୍ୱଚକ୍ଷୁରେ ଦେଖିବାକୁ ଆସିଲେ । ଅଜୟପାଳ ତାଙ୍କ ଲୋକଙ୍କୁ କହିଲେ—"କାଫୁ ଜୀବିତ ଥିବା ପର୍ଯ୍ୟନ୍ତ କେବେ ମୁଣ୍ଡ ନୁଆଁଇବ ନାହିଁ । ତାଙ୍କ ମୁଣ୍ଡଟିକୁ ଏପରି ଭାବରେ କାଟ ଯେପରି ତାଙ୍କ ମୁଣ୍ଡଟି ଆସି ମୋ ଗୋଡ଼ ତଳେ ପଡ଼ିବ ।" ଯେତେବେଳେ ସୈନ୍ୟମାନେ ଅଜୟପାଳର ଆଦେଶ ପାଳନ କରିବାକୁ ଗଲେ, କାଫୁ ରାଗରେ ତାଙ୍କ ମୁଣ୍ଡ ହଲାଇ ଦେଲେ । ଦୁଇମୁଠା ଧୂଳି ଉଠାଇ ଆଣି ଖାଇ ଦେଲେ । ଘୃଣା ଚକ୍ଷୁରେ ଅଜୟପାଳଙ୍କୁ ସେ ଅନାଇଲେ । ଯେତେବେଳେ କାଫୁର ମୁଣ୍ଡ କଟାଗଲା, ମୁଣ୍ଡଟି ଅଜୟପାଳଙ୍କ ମୁଣ୍ଡ ପାଖକୁ ଛୁଟିକିଗଲା । ପାଦ ଆଡ଼କୁ ପଡ଼ିଲା ନାହିଁ । କାଫୁର ବୀରତ୍ୱ ଦେଖି ଅଜୟପାଳ ସ୍ତମ୍ଭୀଭୂତ । ଆଶ୍ଚର୍ଯ୍ୟ । ସେ ଯେ ସାହସିକତାର ଜ୍ୱଳନ୍ତ ପ୍ରତୀକ, ଏଥିରେ ତାଙ୍କର ସନ୍ଦେହ ନଥିଲା । ସେଥିପାଇଁ ଅଜୟପାଳ ସାମରିକ ସମ୍ମାନସହ ପବିତ୍ର ଗଙ୍ଗାନଦୀ କୂଳରେ ତାଙ୍କ ଶବଦାହ କରାଇଲେ । କାଫୁର ବୀରତ୍ୱ ଏବେ ବି ହିମାଚଳ ପ୍ରଦେଶର ଗୋସେଇଁ ମା'ମାନେ ସେମାନଙ୍କ ନାତିକୁ କହିବାକୁ ଭୁଲନ୍ତି ନାହିଁ ।



# ପୃଥିବୀର ଲୋକକଥା

(୧) ଭିଏତ ନାମ, (୨) ଲାଦାଖ- ୧, (୩) ଲାଦାଖ- ୨, (୪) ପଞ୍ଜାବ- ୧
(୫) ପଞ୍ଜାବ- ୨, (୬) ପଞ୍ଜାବ-୩, (୭) ପଞ୍ଜାବ-୪, (୮) ପଞ୍ଜାବ-୫,
(୯) ଉତ୍ତର ପ୍ରଦେଶ- ୧, (୧୦) ଉତ୍ତରପ୍ରଦେଶ- ୨, (୧୧) ପଞ୍ଜାବ-୬,
(୧୨) ଉତ୍ତର ପ୍ରଦେଶ-୩, (୧୩) ପଞ୍ଜାବ-୭, (୧୪) ଉତ୍ତର ପ୍ରଦେଶ-୪,
(୧୫) ମଧ ପ୍ରଦେଶ- ୧, (୧୬) କାଶ୍ମୀର- ୧, (୧୭) ଆସାମ- ୧,
(୧୮) କାଶ୍ମୀର- ୨, (୧୯) କାଶ୍ମୀର-୩, (୨୦) ଇହୁଦୀ- ୧
(୨୧) ହିମାଚଳ ପ୍ରଦେଶ- ୧, (୨୨) ଆସାମ- ୨, (୨୩) ଶ୍ରୀଲଙ୍କା- ୧,
(୨୪) ଚଷ୍ଟିଆ- ୧, (୨୫) ଇହୁଦୀ- ୨, (୨୬) ସାନ୍ତାଳ- ୧ (୨୭) ଇଟାଲି- ୧,
(୨୮) ମଧ ପ୍ରଦେଶ- ୨, (୨୯) ଶ୍ରୀଲଙ୍କା- ୨, (୩୦) ସାନ୍ତାଳ- ୨,
(୩୧) ସାନ୍ତାଳ-୩, (୩୨) ସାନ୍ତାଳ-୪, (୩୩) ସାନ୍ତାଳ-୫),
(୩୪) ସାନ୍ତାଳ-୬, (୩୫) ସାନ୍ତାଳ-୭, (୩୬) ନେପାଳ- ୧,
(୩୭) ହରିୟାନା- ୧, (୩୮) ସାନ୍ତାଳ-୮, (୩୯) ସାନ୍ତାଳ-୯,
(୪୦) ସାନ୍ତାଳ-୧୦, (୪୧) ସାନ୍ତାଳ-୧୧, (୪୨) ସାନ୍ତାଳ-୧୨,
(୪୩) ସାନ୍ତାଳ-୧୩, (୪୪) ସାନ୍ତାଳ-୧୪, (୪୫) କନ୍ଧ- ୧,
(୪୬) ନେପାଳ- ୨ (୪୭) ତିବ୍ବତ- ୧, (୪୮) ଇହୁଦୀ-୩,
(୪୯) ଇହୁଦୀ-୪, (୫୦) ଜାପାନ- ୧, (୫୧) ତାମିଲ୍‌ନାଡୁ- ୧,
(୫୨) ତାମିଲ୍‌ନାଡୁ- ୨, (୫୩) ତାମିଲ୍‌ନାଡୁ-୩, (୫୪) ତିବ୍ବତ- ୨
(୫୫) ଫିଲ୍‌ପାଇନ୍- ୧, (୫୬) ଫିଲ୍‌ପାଇନ୍- ୨, (୫୭) ଚୀନ୍- ୧,
(୫୮) ଫ୍ରାନ୍‌ସ- ୧, (୫୯) ଫ୍ରାନ୍‌ସ- ୨ (୬୦) ସ୍କଟ୍‌ଲ୍ୟାଣ୍ଡ୍- ୧ ।

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**
ପୋ.: ଦିଘାଳ, ଜିଲ୍ଲା : ପୁରୀ
ମହାନ୍ତିପଡ଼ା, କାଫ୍‌ଲା, କଟକ- ୨

**ପ୍ରାପ୍ତି ସ୍ଥାନ :** ଗ୍ରନ୍ଥାଳୟ, ପଥିକ, ଭୁବନେଶ୍ୱର, ପଦ୍ମାଳୟା, ବାଦାମ୍‌ବାଡି,
କଟକ ଟ୍ରେଡ଼ିଂ କମ୍ପାନୀ, ବାଲୁବଜାର, କଟକ ।